କବି ଶ୍ରୀ ବୈଷ୍ଣବପାଣିଙ୍କ ବିରଚିତ






ଶ୍ରୀ ଗୋବିନ୍ଦ ସାହୁଙ୍କ ଦ୍ୱାରା

ସପ୍ତମବାର ପ୍ରକାଶିତ ।

---

ଅରୁଣୋଦୟ ଯନ୍ତ୍ରାଳୟର ମେସିନ୍‌ଯନ୍ତ୍ରେ ମୁଦ୍ରିତ ।



Printed by Nityananda Sahoo

AT THE ARUNODAYA PRESS

CUTTACK. 19[illegible]5

ମୂଲ୍ୟ ୦ ° ୵ ତିନିଅଣା ମାତ୍ର ।



## ଗୀ ତି ନା ଟ୍ୟ ।

( ପ୍ର ସ୍ତା ବ ନା )

### ଶିବ ଦୁର୍ଗାଙ୍କର ପ୍ରବେଶ ।

( ତେଜ ତେଜ ଶଙ୍କା ଶଠ, ଭୈଜବଂଶୀ-ବୃତରେ )

କର କର ହର ମୋର ଶ୍ରୁତି ଜନ୍ମ ପବନ୍ତ । ରାମାୟଣ ପୁରାଣ ଶୁଣାଅ ଭୂତନାଥ । ସଦା । ବାଧା ନ ଦଅ ଶ୍ରଦ୍ଧାରେ, ସଦା ବସୁଧାରେ । ଉଦ୍ଧାର ପଥକୁ ମୋର ହେବ ମଦ ଯେ ନାମ ଧର ଭୂଷଣ, ପଢ଼ିଲ ବେଦାନ୍ତୀ କୁଣ୍ଡ । ନାଥ ଦେଖିଛୁ ଏ ନେତ୍ର । [illegible] ଖଣ୍ଡ ସୁଧାଖଣ୍ଡ । ସ୍ଥିର ମୋ ହୃଦ ମନ୍ଦିର ଶକ୍ତି ଦୁରିତ । ଶା ପ୍ରଚଣ୍ଡ ମାର୍ତ୍ତଣ୍ଡ ବଂଶେ, ଜନମିଣ ରଘୁଅଂଶେ, ବଇ ବୋଲେ [illegible] କଲେ ଧର ଦଣ୍ଡଛତ୍ର ॥

ଦୁର୍ଗା—ହେ ମହେଶ । ତବ ମୁଖାକାଂକ୍ଷୀ
ରାମ[illegible] ଚନ୍ଦ୍ର ସୁଧାସମ, ସ୍ଥିର [illegible]ରେ ଅବରତ
ଶୃତକା ମୁଁ ଆଶାୟୀ ତହିଁରେ
ସମୁଦ୍ର କି ଶୁଖିଯାଏ କଲେ ଜଳପାନ
ରାମଗୁଣ [illegible] ସମାନ, କହୁଥିଲେ ନ ସରିବ ତାହା ।
ରା[illegible] ଜ୍ୟେଷ୍ଠପୁତ୍ର ମେଘନାଦ ବଧେ
ଶକ୍ତିମାଣ ରାମାନୁଜେ ଗଲ ଲଙ୍କାଗଡ଼େ
[illegible]ଷେଣର ପରାମର୍ଶ ଘେନି,
ଗନ୍ଧମାଦନୁ ଔଷଧ ଆଣାଇ ଶ୍ରୀରାମ
ବଞ୍ଚାଇଲେ ନିଜ ସହୋଦରେ,

ଏ ପର୍ଯ୍ୟନ୍ତ ଶୁଣାଇଛ ମୋତେ
ଏଣିକି କି ହେଲା ମୋତେ କହ ପଶୁପତି ।

ଶିବ—ହିମାଦ୍ରିନନ୍ଦିନି !
ଶୁଣି ରାମନାମ ହୃଦୟରୁ ତାପ କର ଦୂର
ହେ ଚଣ୍ଡନାଶିନି ! ଚଣ୍ଡାଳଥିଲା ଗୁହ୍ୟକ ଶବର ଜାତିରେ ର
ରାମ ସଙ୍ଗେ ମିତ୍ର ହୋଇ ହୋଇଲା ମୁକତି
ଯେ ଭାବେ ଯେ ଭଜେ ସେହିଭାବେ ପାଏ ତାକୁ
ଆହା ! କି ନାମ ସେ,
ରା ବୋଲି ଭକ୍ତେ ଯେ ଉଚ୍ଚାରନ୍ତେ ତୁମ୍ଭେ
କୁମ୍ଭେ ପଡ଼ି ହେଲି ଗୃହ କର
ନ ଧରିଥିଲେ ମୁକ୍ତି ପାଇଥାନ୍ତା ସେହି
ହେ ଭବାନି ! ତୋହପାରୁ ଅଗୋଚର ନାହିଁ କିଛି ଭବେ
ଗୁପ୍ତ ପ୍ରିୟେ; ଏକାନ୍ତ ମନେ
ଏକାନ୍ତେ ବସିଣ ତୋତେ ଶୁଣାଇବି ସର୍ବ

⟶ ୦ ⟵ (ଶିବଦୁର୍ଗାଙ୍କର ପ୍ରସ୍ଥାନ)

## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ ।

ରାବଣ ଓ ଶୁକଶାରଣର ପ୍ରବେଶ ।

ରାବଣ—ମନ୍ତ୍ରିଗଣେ ! ଆଶାବୃକ୍ଷ ହେଲା ଉତ୍ପାଟନ
ପୋତିଥିଲି ବହୁଆଶା ହୃଦେ, ରାମାନୁଜ କରିଣ ବିନାଶ
ବାମାଭୋଗ କରିଥାନ୍ତି ସୁଖେ
କିନ୍ତୁ ! ସବୁ ଶ୍ରମ ହୋଇଲା ବିଫଳ
ଫଳଭୋଗୀ ହୋଇଲେ ବାନରେ
କେତେବଡ଼ ଶକ୍ତି ମୋର ହୋଇଲା ବ୍ୟର୍ଥ
ବ୍ରହ୍ମା, ରୁଦ୍ର, ଇନ୍ଦ୍ର ଚନ୍ଦ୍ର, ଯେ ଶକ୍ତିମୁଖରୁ

ମୁକ୍ତି ନପାନ୍ତି ହେଲେ, ତହୁଁର୍ଦ୍ଧ ବର୍ଣ୍ଣିଲ କ୍ଷୁଦ୍ର ମାନବସନ୍ନ୍ୟାସୀ
ଭାଇ, କୁମ୍ଭକର୍ଣ୍ଣ କୁମର ଅକ୍ଷୟ୍ୟ
ମେଘନାଦ, ଅତିକାୟ୍ୟ ବୀରବାହୁ ଆଦ
ଯାହାଙ୍କର ନାମେ ତ୍ରାସ ଲଭଇ ଶମନ
ମନକଲେ ଦଣ୍ଡକେ ଯେ ଶୋଷିବେ ସାଗର
ଧର, ଏତେବଳ ଦେହେଁ ମଲେ ରଣେ ମାନବର ବାଣେ
କାହାକୁ ଘେନିଣ ଆଉ ବସିବ ଆସ୍ଥାନେ
କାହା ଦମ୍ଭେ ଦମ୍ଭ ହେବ ହୃଦ ।
ମନ୍ତ୍ରୀ—ମହାରାଜ ! କ୍ଷମା ବୃଥା କରୁଛ ବିଳାପ
ବୀରଧର୍ମ କରିଛ ପାଳନ, ଶୁଣ ଏକ ହିତ ଉପଦେଶ
ଯେ ଲୋକ ଅରଜେ ଧନ, ନିଜେ ଭୋଗ କରୁଥାଏ ତାହା
ଜଣେ ଅଗ୍ନି ଜାଳିଲେ ମୁଣ୍ଡରେ, ଆନର ନପୋଡ଼ଯାଏ ମୁଣ୍ଡ
କର୍ମ କରି ଭୁଞ୍ଜିବ ଆପଣ
ତେବେ ଚେଷ୍ଟାରୁ ବିରତ ହେବା କାପୁରୁଷ କାର୍ଯ୍ୟ
ଚେଷ୍ଟା କଲେ ଅବଳା ସବଳା
ଚେଷ୍ଟାର ଅସାଧ୍ୟ କିଛି ନାହିଁ ଏ ଜଗତେ ।



ନେପଥ୍ୟେ ନିକଷାର ପ୍ରବେଶ ।

( ରଙ୍ଗିଆ ଦୁଆରୀ ବାହାରିଲ ରେ-ନୃତେ )

କହ କେଉଁଣେ ଅଛୁ, ମୋର ହଂସା ଉଡ଼ିଗଲା ଦଶଶିର ରେ ।
ଦେଖୁ ଏତେ ଦଶା କଲୁ ଲୋକହସା କେତେ ନଡ଼ବଂଶ ମଲେ
ମୋର ରେ । ପଦ । ଭସାଇଲୁ ମୋତେ ଦୁଃଖ ଦରିଆରେ
ଏତେକଥା ଗତେ ଥିଲା ତୋର ରେ । ବାଟିବଣ ପରି ବଂଶ
ବଢିଥିଲେ କଣି ହାଣି ବହିନେଲେ ଘୈର ରେ । ୧ । ଗ୍ରନ୍ଥ
ବୋହି ମୁଣ୍ଡ କୋଡ଼ ହୋଇ ଦାଣ୍ଡେ ଗଡ଼ୁଛନ୍ତି କରି ହାହାକାର

ରେ । ଯାହା କେ ହୋଇବ ରାହା ହେବାପାଇଁ ଦେଖି ଛାତି ଫାଟିଯାଏ ମୋର ରେ ।୨। ତେରଶତ ନାତି ଚଢ଼ୁଥିଲେ ହାତୀ କମ୍ପିଯାଉଥିଲା ତ୍ରିପୁର ରେ । ପିଣ୍ଡ ଦେଇପାଇଁ ଖଣ୍ଡେ କେହି ନାହିଁ ହୋଇବାର ଏକା ହେଲି ସାର ରେ ।୩। ହିଜଗଲ କାହିଁ ଆଜି ଡାକ ହୁରି ଛାଡ଼ୁଥିଲେ ବାର ବାର ରେ । ବଇମୁଖ ତନ୍ତ୍ର ବନ୍ଧୁ ବାନ୍ଧିଥାନ୍ତି ଲଗିଥାନ୍ତି କେତେ କାରବାର ରେ । ୪ ।



ରାବଣ—ଓଃ, ଶ୍ରୁତିମୂଳ ହୋଇଲା ବଧୀର
ଯେ ଆଡ଼େ ଦେଖୁଛି ଯେ ଆଡ଼େ ଶୁଣୁଛି
ଶୁଭୁଅଛି ହାହାକାର ପୂର୍ଣ୍ଣ
କାହା ମୁଖେ ନାହିଁ ହର୍ଷ ଲେଶ ।

ନିକଷା—ରାବଣ ରେ ! ଏତେକଥା ଥିଲା ମନେ ତୋର
ମୋର ଗର୍ଭେ ହୋଇ ଜାତ ବିଶ୍ରବା ଔରସେ,
କନ୍ଦାଇଲୁ କେତେ ମହାପ୍ରାଣୀ
ଶ୍ରାବଣ ବରଷା ପରି ତୁହି ଝରି ନେତ୍ରୁ
ଲଙ୍କାଦାଣ୍ଡ ହେଲଣି କାଦୁଅ
ଗଜଦନ୍ତ ଖଟେ ଯାକୁ ନ ମାଡ଼ଇ ନିଦ,
ଆଜି ପୁଣି ଗଡ଼ନ୍ତି ଧୂଳିରେ
ଯେ ଶିରେ ଚଢ଼ିଲେ ଫୁଲ ଲଗେ ବଜ୍ର ପରି
ସେହି ଶିରେ କଗୁଡ଼ନ୍ତି କର
ବନଫୁଲ ବନେ ଫୁଟି ମଉଳିଲା ପରି, ଝାଉଁଳି ଯାଉଛି ମୁଖଶଶୀ
ବାପରେ ! କର୍ଣ୍ଣା [illegible] କଲୁ ତୁହି ନାଶି ।
ସେହିଦୋଷୁଁ ହେଲା ଏତେ ଦୂର, ମାନ ମୋର ବୋଲ ଧନ
ଫେରାଇ ଦିଅ ଜାନକୀ ନେଇ ରାମ ପାଶେ
ସବୁ କଥା ଯାଉ ମେଣ୍ଟି ମାଡ଼ି ।

ରାବଣ—ବୀରପ୍ରସବିନୀ ମାତଃ !
ପ୍ରଜ୍ୱଳ ଅନଳେ ଘୃତ ନ ଢାଳ କଦାପି
ଫେରଦେଲେ ସୀତା ବଳ କଳେବେ କ୍ରନ୍ଦନେଶ
ତାହା ମୁହିଁ ନ ପାରିବ କରି
କାପୁରୁଷ ଦେହେଁ ପ୍ରାଣ ରଖି କିବା ଫଳ
ସେ ଦେହେଁ ମମତା କିପାଁ ଏଡ଼େ
ପ୍ରତିଜ୍ଞା କରୁଛି ମାତ ! ସୀତା ପ୍ରେମ ନ ପାରିବ ଛାଡ଼ି
ବନେ ଫୁଟେ ପଙ୍କଜିନୀ ପରକାଶି ଶୋଭା
ଲୋଭକାଂକ୍ଷୀ ଭ୍ରମର ତହିଁରେ,ଚନ୍ଦ୍ରେମଧୁମୁଗ୍ଧହୋଇତହିଁ
ହୋଇଗଲେ ଚନ୍ଦ୍ର ଉଦେ ନ ପାରଇ ଜାଣି
ପଙ୍କଜିନୀ ହୁଅଇ ମୁଦ୍ରିତ, ବନ୍ଧୁ କଷ୍ଟେ ରହେ ନିଶି ବଞ୍ଚି
ସେ ଫୁଲକୁ ନ କାଟେ ସେ କେବେ
ସୀତା ପଙ୍କଜିନୀ ବନେ ରହିଥିଲା ଫୁଟି
ମୁହିଁ ଅଟେ ମଧୁକରତାର,ଭାଗ୍ୟେମୋର ହୋଇଛିପ୍ରାପତ
ତାର ମାୟା ନ କାଟିବ ମାତ !
ରାମଚନ୍ଦ୍ର ଚନ୍ଦ୍ରପରି ତାର, ତାର ପାଇଁ ସୃଷ୍ଟି କୁମୁଦନୀ ।
ନିକଷା—ବାପରେ ! ସୀତା ବୋଲି ସୁବର୍ଣ୍ଣକୁ କହି
ସୁନା ଟେକି କଲେ ଚୁନା ହୁଅନ୍ତି ସକଳେ
ସେ ନାମରେ ନ କରନ୍ତି ଟେକି
ଅଜନ୍ମାତ ମିଳିଗଲା ତାହା
ଦଶଥା ଧମିତେ ଦେଇ ଦ୍ୟନ୍ତି ଦାନକରି
ଦ୍ୱିଜର୍ଷିଜ ନାମ ଧରେ ରାମ
ଯେବେ ତାହା ପାଇଅଛି ବାପ
ଦାନ ଦେଇ ମାନ ରଖ ତୋର
ତହିଁର ଦକ୍ଷିଣା ଏବେ ହେଲେ ପୂର୍ଣ୍ଣନାତ
ଫେରିଯାଉ ପତି ଅଯୋଧ୍ୟାକୁ ।

ରାବଣ—ଶୁନ ହୁଅ ମାତ !
ବାଳକ ପର୍ଯ୍ୟେ ଶିକ୍ଷା ଦେଉଅଛୁ ମୋତେ
ଅତି ବୃଦ୍ଧା ହୋଇବାରୁ ତୁହି
ମତି ତୋର ହୋଇଛି ଚପଳ,ବଳହୀନ ହୋଇଛି ମସ୍ତିଷ୍କ
ଯେତେବେଳେ ଜିଣିଲି ଯମକୁ
ଯେତେବେଳେ ଜିଣିଲି କୁବେର
ଯେତେବେଳେ ଟୋଳିଲି କୈଳାସ
ଯେତେବେଳେ ଯୁଝିଲି ଚନ୍ଦ୍ର ସଙ୍ଗେ
ତେତେବେଳେ ପୁତ୍ର କାନ୍ତି କାହିଁଥିଲେ ମୋର
ସେମାନେ ମୋ ଅରଜିଲ ଧନ
ନିଜେ୨ ଅର୍ଜିଥିଲି ତାହା, ନିଜ କରେ କରିଲି ମୁଁ ବ୍ୟୟ
ଏଥିପାଇଁ କପାଇଁ ମୁଁ ହୋଇବ କୁଣ୍ଠିତ ।
କୁଣ୍ଠିତ ହୋଇବ ଧର୍ମ ପରେ
ନିଜେ ଥିଲେ କାଲି ପୁଣି ମିଳିବ ସେ ଧନ
କିନ୍ତୁ ! ମାନ ଗଲେ ଆଉ ନ ପାଇବ
ଆଉ ତୋର ହିତ ଉପଦେଶ
ମନ୍ତ୍ରୀ ! କର ସୈନ୍ୟସଜ ବେଗେ ବଧିବ ଶ୍ରୀରାମେ
ବସିବ ଆସ୍ଥାନେ ମୁହିଁ ସୀତାଘେନି ବାମେ ।
( ମନ୍ତ୍ରୀଙ୍କ ସହ ପ୍ରସ୍ଥାନ )



ନିକଷା—ହା ବାପ ରାବଣରେ, ନ ମାନିଲୁ ମାଆ କଥା ତୋର ।
( କଶୋଶ୍ରୀ ଗୋ ରେଖ ଶ୍ୟାମବନ୍ଧୁ ରାଜକ-ବୃତ୍ତେ )
ବନ୍ଧ ମୋତେ କଲୁ ଆଗ୍ର କୁଡ଼ୀରେ, (ବୁଢ଼ୀକାଳେ) ବଡ଼-
ବୋହୂ କରୁ ମୋର ଗଲ ଧୂନାଚୂଡ଼ୀ ରେ । ପଦ । ଫାଟିଗଲ
ଛାତ ଘେଡ଼ି, ଆଉ କି ହୋଇବ ଯୋଡ଼ି । ପଡିବ ଯାଗରେ କି

ମରିବ ମୁଣ୍ଡ କୋଢ଼ ରେ । ୧ । ଏତେଡ଼ ବଡ଼ ଲଙ୍କାପୁର; ପୋଢ଼ ହେଲା ନାରଖାର । ସେ କଥା ଶୁଣିଲେ ଭୁଣ୍ଡ ବାଜିଯାଏ ଜଢ଼ ରେ । ୨ । ହୁଡ଼ଗଲା ବୁଦ୍ଧି ଆଉ, ଲୋଡ଼ିଲେ ପାଇବ କାହୁଁ ଆଣ୍ଠୁ ମାଡ଼ି କେ ଆଉ ବସିବ ପିଣ୍ଡ ବାଡ଼ିରେ । ୩ । ରାଣ୍ଡ ବୋହୂ ପଲ ପଲ, ଜଣେ କେହି ନାହିଁ ଭଲ । ବଇଷ୍ଣବ ବୋଲେ କେ ପିନ୍ଧିବ ପାଟଶାଢ଼ୀ ରେ । ୪ ।



ଦ୍ୱିତୀୟ ଦୃଶ୍ୟ ।

ରାମ ଲକ୍ଷ୍ମଣ ହନୁ ବିଭୀଷଣର ପ୍ରବେଶ ।

[ନେପଥ୍ୟ]— ରେ ରେ ଜଟାଧାରି, ଜଟାଧାରି

ରାମ—ସଉମିତ୍ରେ ! ଅକସ୍ମାତ କିପାଁ ଏ ଘଟନା ?

ନାହିଁ ମେଘ ଆକାଶ ମଣ୍ଡଳ

କି ଗର୍ଜ୍ଜନ ଶୁଭେ କହ ଭାଇ

ବିନା ମେଘେ ବଜ୍ରଶବ୍ଦ କାହୁଁ ହେଲା ଜାତ ।

[ନେପଥ୍ୟ ପୁନଃଶବ୍ଦ]— ଜଟାଧାରି, ଜଟାଧାରି, ଜଟାଧାରି ।

ରାମ—ଓଃ ପୁଣି ଶ... ! ଜଣାଯାଏ ରାକ୍ଷସ ଗର୍ଜ୍ଜନ

ଘନ ଘନ କମ୍ପେ ବସୁମତୀ

ଦେଖ ଭାଇ ସ୍ୱର୍ଗର ଦୁଆରେ, ରଣଆଗେ ଆସୁଛି କି ଭ୍ରାତ

ରାକ୍ଷସକୁଳ କେଶରୀ ପାପ ଦଶଗ୍ରୀବ ।

ଲକ୍ଷ୍ମଣ—ଜ୍ୟେଷ୍ଠଭ୍ରାତ ! ଧାଇଁଛନ୍ତି ରାକ୍ଷସ ଅଗଣିତ

ମତ୍ତ ମାତଙ୍ଗରେ ଭଙ୍ଗି କରି

ମଧ୍ୟେ ବିଜେ ରଥେ ଦଶାନନ

ବାଳାର୍କ ସଦୃଶ ଦଶେ ନୟନ ତାହାର

ଅନ୍ଧ କ୍ରୋଧେ ଗରଜନେ କମ୍ପେ ବସୁମତୀ

ଶକ୍ତି ମାରି ଯାଇଥିଲା ବୋଲି

ଗର୍ବ ପର୍ବତ ତାହାର ଲାଗିଅଛି ପକ୍ଷ

ବଜ୍ରବାଣେ ଛେଦବ ତାହାକୁ
ଆଜ୍ଞାମାତ୍ର ଅପେକ୍ଷା ଅଗ୍ରଜ

ରାମ—କହ ଭାଇ ! ସିରୁ କେଉଁଆଡ଼େ
ଗତକଥା ପଡ଼ିଲେ ମୋ ମନେ
ପ୍ରାଣପକ୍ଷୀ ପିଣ୍ଡୁ ଯାଏ ଉଡ଼ି
ବର୍ଥାଇଲେ ଲକ୍ଷ୍ମଣ ସୁଷେଣ
ଶକ୍ତିଘାଆ ଶୁଖିନାହିଁ ଭଲ କର ତୋର
ନ ଛାଡ଼ିବ ତୋତେ କେବେହେଁ ରାବଣ ମୁଖକୁ ।
[ ଗୀତ ।—ଆଣିଦେବ ନା ସତେ ଆଶା ବୁଝେ ]

ଭାଇ ସିରୁ କେଣିକ ମୋ ହୃଦମଣିକ ଶୁଣ ମୋ ବାଣୀକି । ତୋର ଗୁଣକୁ ଗୁଣି, ମରିବ ଜାଣି, ଥାଅରେ ଏଣିକି । ପଦ । ବଂଶପାଣି ଦାଉନ, ସହିବ ମୁଁ ଆଉ ନା । ବୁଡ଼ିଥିବା ବଣିଜ ଜାହାଜ କୁଳେଦେଲେ ଛିଣ୍ଣାଶୀକି ।। ସୀତାଜିତା ଭାଷାରେ [କେ] ଶୁଣାଇବ ରସାଳରେ, ଭୀତ ହେଉଛି ଚିତ୍ତ; ଶୁଣି ସେ ଦୈତ୍ୟ, ଗର୍ଜନଠାଣିକି ।୨। ତୋତେ ଘେନି ବନରେ, ଆନନ୍ଦିତ ମନରେ, ଯୁଝୁଥିବ ରେ ଭାଇ ତେଜେଶ ମୁହିଁ ଦୃଷ୍ଟି ଦୁଲଣୀକି ।୩। ଆଜି ଅନୁରାଗରେ, ବଂଶବାହା ସଙ୍ଗରେ, ବଇସ୍ତୁବ କହିଇ ଲଢିବ ଘେନି ବାନରରେଣ୍ଣୀକି । ୪ । ⟶)|(⟵

ହନୂ—ଭାରତଭୂବନ ରବି ରଘୁକୁଳ ନାଥ
ଶ୍ରୀଚରଣେ ଏହି ମୋର ଭିକ୍ଷା
ବହୁଦିନୁ ବଳିଛି ମୋ ଆଶା
ରଣ କରିବାକୁ ଏକା ରାବଣ ସଙ୍ଗରେ
ଗନ୍ଧମାଦନର ଶୃଙ୍ଗ ଭାଙ୍ଗିଲି ପର୍ବତୁ
ଦଶମୁଣ୍ଡ ଭାଙ୍ଗିବି ତାହାର
ଲାଙ୍ଗୁଳେ ମୁଡ଼ାଇ ରଥ ଉଡ଼ାଇବି ଶୂନ୍ୟେ
ଏହି ସ୍ଥାନେ ଥିଣ୍ଡ ଝୁଲାଇ ।

ରାମ—ଯାଅ ବତ୍ସ ! କର ଯାହା ଇଚ୍ଛା
ତୋ ପୃଷ୍ଠପୋଷକ ଆମ୍ଭେ ହେଲୁଁ ଦୁଇଭାଇ ।
ରାବଣ—ଆରେ ଆରେ ଭଣ୍ଡ ଜଟାଧାରି
କେଣେଅଛ ରଣକୁରେ ହୁଅ ଅଗ୍ରସର
ମୃତ୍ୟୁକାଳେ ଲକ୍ଷଣ ରହିଲେ, ଯମକରେ ଛାଡ଼ିବ ସହଜେ
ମୃତ୍ୟୁମୁଖେ ହୁଅରେ ପ୍ରସ୍ତୁତ ।
ହନୂ—ରହ ରେ ରାକ୍ଷସ କୁଳଦସ୍ୟୁ ! ରାମଦାସେ କରିଲେ ପରାସ୍ତ
ତେବେ ଯିବୁ ପ୍ରଭୁଙ୍କ ନିକଟେ
ଯମ ତୋର ସମ୍ମୁଖେ ପ୍ରସ୍ତୁତ
କାଳପାଶ ମୋ ଚର୍ମ ଲଙ୍ଗୂଳେ
ବାନ୍ଧି ତୋତେ ବୁଡ଼ାଇବି ରଉରବ ନର୍କେ
ଆଜି ରାଣ୍ଡ ହେବ ମନ୍ଦୋଦରୀ, ଶୂନ୍ୟକର କଗୁଡ଼ିବ ମୁଣ୍ଡେ
ଦଣ୍ଡେ ମାତ୍ର ରହ ନାରୀଚୋର ।
ରାବଣ—ରେ ବନ୍ୟବାନର ! ତୁ କିସ ଲଢ଼ିବୁ ମୋର ସଙ୍ଗେ
ନାହିଁ ତୋର ବାପ ଠିକଣା, କିବା ଶିବ କି ଅବା ପବନ
ବୁଝିଆସ ଯାଇଁ ମାଆଠାରୁ, ତେବେ ରଣ କରିବୁ ମୋ ତୁଲେ
ଜାରଜାତ ସଙ୍ଗେ ରଣ ନ ସାଜିବ ମୋର
ଲଜ୍ଜା ଥିଲେ ଆସନ୍ତୁ କି ପାଶେ ।
ହନୂ—ରେ ବ୍ରାତ୍ତଙ୍ଗା କୁଳବୁଡ଼ା ପାପୀ
ନିଜଗୋତ୍ର ଗୃହି ଶିଳେ କହୁନାହୁଁ କଥା
ପିତା ତୋର ବିଶ୍ରବା ବ୍ରାହ୍ମଣ, ମାତା ତୋର ନିକଷା ରାକ୍ଷସୀ
ମିଶାମିଶି ଏଣୁ ଆଉ ତେଣୁ; ଜାତ ହେଲୁ ତୁ ବ୍ରହ୍ମରାକ୍ଷସ
ଜାତିର ପରୀକ୍ଷା ମୂର୍ଖ ପଢ଼ୁନାହିଁ ଏଥି
ବସିନାହିଁ ଛାତ୍ର ବନ୍ଧୁ ସଭା, ଶକ୍ତିର ପରୀକ୍ଷା ସ୍ଥଳ ଏହି
ଶକ୍ତି ଥିଲେ କର ରଣ ଦେଖନ୍ତୁ ସକଳେ ।

ରାବଣ—ସେ ଜନମରେ ନୁହେଁ ଭୀତ ଲଙ୍କାର ରାବଣ ।

( ଉଭୟ ଯୁଦ୍ଧ କରୁ କରୁ ହନୁର ପରାସ୍ତ ରାମର ପ୍ରବେଶ । )

ରାମ—ରହ ରହ ଆରେ ନାଶିଚର
ହନୁମାନେ ପରାସ୍ତ କରିଣ
ରଣଜୟୀ ହେଉ ମନେ ମନେ
ସିଂହମୁଖେ ପଡ଼ୁଛୁରେ ଗଜ, ତୀକ୍ଷଣଶରେ ଚିରିବ ତୋ ଶିର
ଯେଉଁଦିନୁଁ ହରିଛୁ ଜାନକୀ
ସେହି ଦିନୁଁ ସୀତାବ୍ୟାଧି ଘୋଟିଛି ତୋ ଅଙ୍ଗେ
ଏ ରୋଗକୁ ନାହିଁରେ ଔଷଧ ।

ରାବଣ—ଜଟାଧାରି ! ଯା ବୋଇଲୁ ସତ୍ୟ କି ରେ ତାହା
ରୋଗକୁ ଔଷଧ ନାହିଁ ଏ କେବଣ କଥା
ପାପକୁରେ ଅଛି ପ୍ରାୟଶ୍ଚିତ୍ତ,
ଥିଲେ ରାନ୍ଧ ଆସେ ପୁଣି ଦନ
ଉଦର ନ ଥିଲେ ଖାଦ୍ୟ ଲୋଡ଼େ କରେ କେହୁ
ସୀତାବ୍ୟାଧି ଘୋଟିଲା ମାତ୍ରକେ, ତୁହି ରାମ ମିଳିଛୁ ଔଷଧ
ତୋ ବଧନାଲେ ବ୍ୟାଧି ମୋର ହୋଇଯିବ ନାଶ
ଆଜି ତାହା ଘଟାଇଛି ବିଧି ।

ରାମ—ଜଣାଯିବ ଆଜି ରଣସ୍ଥଳେ, କେ ବ୍ୟାଧ କେ କାହାର ଔଷଧ

( ଯୁଦ୍ଧ କରୁ କରୁ ପ୍ରସ୍ଥାନ ) ( ବିଭୀଷଣର ପ୍ରବେଶ )

ବିଭୀ—ଓଃ ଆଜି କି ଦୁର୍ଦ୍ଦିନ ଆସି ହେଲା ଉପସ୍ଥିତ
ନ ରହିବ କାହାର ଚିହ୍ନଣା, ପ୍ରାଣପଣେ ଯୁଝୁଛି ଲଙ୍କାପତି
ଉଲ୍କାସମ ଛୁଟେ ଶରମାନ,
ବାନର ଦଳରେ ଉଠେ ହାହାକାର ଧ୍ୱନି
ଭଲ ମନ୍ଦ ମୁହୂର୍ତ୍ତିକେ ସବୁ ହେବ ଜଣା
ଧାଇଁ ଅଛନ୍ତି ବାଳିସୁତ ଅଙ୍ଗଦ ଏଆଡ଼େ ।

( ଅଙ୍ଗଦର ପ୍ରବେଶ )

ବିଭୀ—କହ କହ ବାଳର କୁମର, ରଣସ୍ଥଳ ଘଟଣା ସମସ୍ତ ।

ଅଙ୍ଗଦ—ଶୁଣ ୨ ଲଙ୍କାଅଧୀଶ୍ୱର, ରଣସ୍ଥଳେ ଆଶ୍ଚର୍ଯ୍ୟ ଘଟଣା

ପ୍ରଥମେ ପର୍ବତାବାଣ ପେଶନ୍ତେ ରାବଣ
ବଜ୍ରବାଣେ ଛେଦଲେ ତା "ପ୍ରଭୁ"
ପୁଣି ଅଗ୍ନି ଶର ମାରନ୍ତେ ଶ୍ରୀ ରଘୁପତ
ଜଳଧାର ଶରେ କାଟେ ଦୈତ୍ୟ ।
ଶରେ ଶର ବାଜ ଅଗ୍ନି କଣା ବାହାରଣ
ଉଡ଼େ ଯେହ୍ନ ଖଦ୍ୟୋତପଟଳ
ଶର ଛାଇରେ ନ ପଡ଼େ ସୂର୍ଯ୍ୟ ରଶ୍ମି ତଳେ
ବାର ବାର ଦଶମୁଣ୍ଡ କାଟନ୍ତେ ରାଘବ
ପୁଣି ମୁଣ୍ଡ ହୋଇଯାଏ ଯୋଡ଼, ଅବଶ୍ରାମ ଚାଲିଅଛି ରଣ
ଶରଘାତେ ଜର୍ଜ୍ଜରଶ୍ରୀରାମ
ରକ୍ତଧାର ଝର ଝର ବହେ ।
ନୀଳମେଘ ବିଦ୍ୟୁତର ଝଲକେଲି ପରି
ଦିଶୁଅଛି ନୀଳ କଳେବର
କୋଟି ୨ ନାଚେ ରୁଣ୍ଡ ରାକ୍ଷସ କବନ୍ଧ
ରକ୍ଷାନାହିଁ ରକ୍ଷାନାହିଁ ରକ୍ଷାନାହିଁ ଆଉ ।

(ଉଭୟଙ୍କର ପ୍ରସ୍ଥାନ

[ ରାମ ରାବଣ ଓ ଲକ୍ଷ୍ମଣ ଯୁଦ୍ଧ କରୁ କରୁ ପୁନଃ ପ୍ରବେଶ ]

ରାବଣ— ନ ପାରିବୁ ଆରେ ଜଟାଧାରି

ପୂର୍ବେ ତପସ୍ୟାରେ ତୋଷି ବ୍ରହ୍ମା ପାଦପଦ୍ମ
ବରଲଭି କରିଅଛି ମୁହିଁ, ଯେତେବାର କାଟିବୁ ମୋ ଶିର
ତେତେ ବାର ହୋଇଯିବ ଯୋଡ଼
ମରିବାର ଭୟ ନାହିଁ ମୋର

ସୀତା ଆଶା ଛାଡ଼ ଆରେ ଯତି
ମୋତେ ବନାଶିଲେ ସେହି ହୁଅନ୍ତା ତୋହର,
ମୋହ ପାଇଁ ବନ୍ଧି ତା ଗଢ଼ିଛୁ
ଯେ ଯାହାର ଧନ ତାକୁ ବାନ୍ଧି ହୁଏ ସ୍ୱର୍ଗ ।

ରାମ—ଲଙ୍କପତି, ଯା କହିଲ ସତ୍ୟ ଅଟେ ତାହା
କିନ୍ତୁ ! ଫଳ ଆଶେ ଯେଉଁ ଜନ ଚଢ଼ଇ ଗଛରେ
ବିଫଳେ କି ଫେରିଯାଏ ସେହି ।
ଚଢ଼ି ବୃକ୍ଷାଗ୍ର ପର୍ଯ୍ୟନ୍ତ ଖୋଜି ତନ୍ନ ୨ କରି
ପରେ ଫେରିବା ଉଚିତ, କିଛୁକ୍ଷଣ ଅପେକ୍ଷା ଆହୁରି
ହୋଇ ନାହିଁ ପରୀକ୍ଷାର ଶେଷ
ଅସ୍ତାଚଳେ ଗଲେଣି ତପନ
କର ସର୍ବେ ଶିବିରେ ଗମନ
ଆଗତ ଯାମିନୀ ଯୋଗେ ହେବ ରଣସ୍ଥିର
କାଲି ପ୍ରାତେ ହେବା ଭେଟାଭେଟି ।

ରାବଣ—ଯାଅ ତେବେ ଆରେ ଜଟାଧାରି ।
କାଲି ପ୍ରାତ ଯାଏ ଥାଅ ପ୍ରାଣେ
ଥିଲେ ଦିନ ମୁହୂର୍ତ୍ତେକ ଆଉ
ଦିନ ତୋର ହୋଇଥାନ୍ତା ଶେଷ
ସାରଥେ ! ଫେରାଅ ଚଞ୍ଚଳ ରଥ ଶିବିର ସମ୍ମୁଖେ ।

( ସମସ୍ତଙ୍କର ପ୍ରସ୍ଥାନ )



(ଭଲବାସିତେ ପାରବେନା- ବୁଲିରେ)

ଦେଖ ଚନ୍ଦ୍ରଯାମିନୀ ନବକାମିନୀଗଣ । ଆସ ସ୍ନେହଭରେ ପୂଜିବ ସଦ୍ୱରେ ସେ ରଙ୍ଗ ରାଜିବଚରଣ ।ପଦ । ଭକତଥିଲେ ଗୋ ସଖି ମୁକତି ମିଳେ । ରାମ ନାମ ସତ୍ୟ ଦେଖ ସକଳ କାଳେ । ଯେ ନାମେ

ତରିଲ ହନୁ ସ୍ୱପତ ସିନ୍ଧୁ ଜାଣ । ୨ । ପାଣିରେ ଗିରି ଗୋ ସଖି ପାଣିରେ ଗିରି । ଭସିଛି ଭସଇ ଯେହ୍ନେ କାଠର ତରୀ । ଇଷ୍ଟମନ୍ତ୍ର - କରି ଯାକୁ ଜପୁଥାନ୍ତି ଈଶାନ । ୨। ଯେ ନାମ ବଳେ ଗୋ ମିତ ଯେ ନାମ ବଳେ,ବିଧାତା ବିହିତ ଏହି ସଂସାର ବଳେ, ଯେ ପାଦ ରଜ ପରଶେ ନାରୀ ହେଲ ପାଷାଣ ॥ ଦୁଷ୍ଟ ରାକ୍ଷସ ଗୋ ଏହି ଦୁଷ୍ଟ ରାକ୍ଷସ । ତାହାଙ୍କୁ ମାରିବ ବାନ୍ଧିଅଛି ସାହସ । ବଇଶ୍ରବ ବୋଲେ ପରି ଲେଉଟୁ ଅଛି ମରଣ । ୪ । (ପ୍ରସ୍ଥାନ)

—•()•—

# ଦ୍ୱିତୀୟ ଅଙ୍କ ।

## ( ପ୍ରଥମ ଦୃଶ୍ୟ । )

( ରାମ ଲକ୍ଷ୍ମଣ ବିଭୀଷଣ ହନୁର ପ୍ରବେଶ । )

ରାମ—ସଉମିତ୍ରେ ! ରାବଣର ଶକ୍ତି ଭାଇ କଲା ଛୁଡ ଆଜି
ବହୁ କାଳରୁ ରୁପିତ ଆଶା ପାଦପରେ
ହୋଇଗଲା ଆଜ ପୁଣି କୁଠାର ପ୍ରହାର
ଜନ୍ମଅନ୍ଧ ଚନ୍ଦ୍ର ସୂର୍ଯ୍ୟ ନ ଦେଖିଲ ପରି
ସୀତା ମୁଖଚନ୍ଦ୍ର ଆଉ ନ ଦେଖିବ ନେତ୍ରେ
ନ ମରିବ ବିଶ୍ରବା ନନ୍ଦନ, ବୃଥା ହେଲ ସାଗର ବନ୍ଧନ ।

ଲକ୍ଷ୍ମଣ—କାତର ନ ହୁଅ ଭ୍ରାତ, ଭାଗ୍ୟଚକ୍ର ମୁହୁର୍ମୁହୁ ଘୁରେ
ଯେବେ 'ମାତା' ନୋହିବେ ଉଦ୍ଧାର
ମାତୃହୀନ ପ୍ରାଣେ ଆଉ କିସ ପ୍ରୟୋଜନ
ନାହିଁ କାର୍ଯ୍ୟ ଅଯୋଧ୍ୟା ପ୍ରଦେଶେ
ବୁଡି ଭାଇ ପ୍ରାଣ ଦେବା ସାଗର ଗର୍ଭରେ ।
ସତ୍ୟ ଯେବେ ଚନ୍ଦ୍ର ସୂର୍ଯ୍ୟ ସତ୍ୟ ଏ ଧରଣୀ
ସତ୍ୟ ଯେବେ ଆକାଶ ପାତାଳ ଦିଗପାଳ
ସତ୍ୟ ଯେବେ ରାମ ନାମ ଏ ତିନିଭୁବନେ

ଧର୍ମିରୁ ଜୟ, ଅଧର୍ମିରୁ କ୍ଷୟ ଯେବେ ସତ୍ୟ
ତେବେ ସୀତା । ଉଦ୍ଧରିବ ନାଶି ମୂଢ଼ଦୈତ୍ୟ ।
ଦୈବବାଣୀ—କାତର ନ ହୁଅ ଆହେ ରଘୁବଂଶ ବୀର
ଅବହେଳେ ବିନାଶ ହୋଇବ ଦଶଶିର
ରାବଣେ ରଖେ ବିରାଜନ୍ତି ମହାମାୟା
ସେ କାରଣୁ ବିନାଶ ନ ହୁଏ ବଂଶବାହା
ଶତେତଅଷ୍ଟ ନୀଳପଦ୍ମ ଦେବୀଦହୁଁ ଆଣି
ଦେବୀ ଘଟ ସ୍ଥାପି ପୂଜ ଶଙ୍କରଘରଣୀ
ପୁଷ୍ପାଞ୍ଜଳି ଦେଇ ତୋଷ କରାଅ ଚଣ୍ଡିକେ
ତାହା ହେଲେ ଦୁଷ୍ଟ ଦୈତ୍ୟ ମରିବ ଦଣ୍ଡକେ ।
ରାମ—ଲଙ୍କାପତି ! ଦୈବବାଣୀ ଶୁଣିଲତ କର୍ଣ୍ଣେ
ଦେବୀଦହ ଅଛି କେଉଁଦିଗେ; ତହୁଁ କେବା ଆଣିବ କମଳ
ତେବେ ଯାଇ ସବୁ ଶ୍ରମ ହୋଇବ ସଫଳ ।
ବିଭୀ—ରଘୁମଣି ! ଦେବୀଦହ ଦକ୍ଷିଣ-ପଶ୍ଚିମେ
ବହୁଦୂର ଅଛଇ ଏଥିରୁ, ବ୍ୟୋମଯାନେ ଯାଉ ହନୁମାନ;
ଶୀଘ୍ର ଆଉ ଆଣିବ ନଳୀନ
ହନୁ—ନବଦୁର୍ବାଦଳ ରାମ ରାଜୀବଲୋଚନ
ରାଜୀବ ଆଣିବ ଆଜ୍ଞା ଦିଅ ହେ ବହନ ।
ରାମ—ଯାଅ ବତ୍ସ; ଆସ ବେଗକରି, ଘଟପୂଜା କରେ ମୁଁ ଆରମ୍ଭ
କୁଶାସନ ଆଣ ଆରେ ଭାଇ । ( ହନୂର ପ୍ରସ୍ଥାନ । )



( ରାମ ଆସନେ ବସି ଘଟପୂଜା ସ୍ତବ । )
ଜଂ ଜଂ ଜଂ ଜଗତମାତ ଯୋଗମାୟା ରୂପିଣୀ ।
ରଂ ରଂ ରଂ ରଙ୍ଗାଧର ରକ୍ତବୀର୍ଯ୍ୟ ଶୋଷିଣୀ ॥
ସଂ ସଂ ସଂ ସର୍ବ ଦୈତ୍ୟ ଗର୍ବ ଖର୍ବ କାରିଣୀ ।
ଲହ ଲହ-ଲହ ଲେଲିତରସନା ଗହ ଗହ ଗହ ଭକ୍ଷିଣୀ ॥

ହ୍ରିଂ ହ୍ରୁଂ ହ୍ରୁଂ ହରନ୍ୟାକ୍ଷ ପୃଷ୍ଠଦେଶ ବାସିନୀ
ଅଟ୍ଟ ଅଟ୍ଟ ଅଟ୍ଟହାସ ମଟ୍ଟ ମଟ୍ଟ ମଟ୍ଟ ଲୋଚନୀ ।
ଝଟ୍ଟ ଝଟ୍ଟ ଝଟ୍ଟ ଝଟ୍ଟକବରନା ପୀନପୟୋଧରଧାରିଣୀ ।
ବଂ ବଂ ବଂ ବଗଳାମୁଖୀ ହର ହୃଦ ତୋଷିଣୀ ॥
ଭୈଁ ଭୈଁ ଭୈଁ ମାଭୈଁ ମାଭୈଁ ଭୂତ ପ୍ରେତ ଡାକିନୀ ।
କଂ କଂ କଂ କଙ୍କାଳଟକେ ବଇମ୍ବ କନ୍ଥ ଖଣ୍ଡିନୀ ।



ଦୁର୍ଗାଙ୍କର ଯୋଗିନୀଗଣ ସହ ରଣସ୍ଥଳେ ନୃତ୍ୟଗୀତ ।
( ଶାରଦେ ବରଦେ ମାତ—ବୃନ୍ଦେ । )

ଗାଅ ଗାଅ ଖାଅ ଖାଅ ଆନନ୍ଦରେ ଯେତେ ଗୋ । ଯୋଡ଼ା ହୋଇ ମଡ଼ା ପଡ଼ିଅଛି କେତେ ଗୋ । ପଦ । ମୁଣ୍ଡରୁ ତାଳୁ ଆଣି, ପାଟିରେ ଦିଅ ଗୁଞ୍ଜି, ହାଡ଼ରୁ ରସ ଶୋଷିବାଇ ଶୋଷ ଲାଗିବ ନାହିଁ ଦାନ୍ତେ ଗୋ । ୧ । ଓଷ୍ଠାର ଆଣି,ଅନ୍ତ, ବାଛି ପକାଇ ଦିଅ ପିତ୍ତ, ପଶୁ ମାଉଁସ ଖାଅନା ଖାଅନା ସଜ ମଡ଼ା ଅଛି ଏତେ ଗୋ । ୨ । ମାଙ୍କଡ଼ ମାଉଁଷ ଖଟା; ପୋଡ଼ିଲେ ଲାଗଇ ମିଠା, କଇଲଣ କର ରାମା ଲମ୍ବିଆକୁ ବଇଆ ବୋଲେ ଗୀତେ ଗୋ ।୩।

---

ଦୁର୍ଗା—ସ୍ଥିରହୁଅ ଯୋଗିନୀଗଣ, ଏହି ସ୍ଥାନେ ଆଅ ସତେଜ ରହ
ରାମର କାତର ଉକ୍ତି ନ ସହେ ମୋ ଦେହ
ସ୍ୱପ୍ନଯୋଗେ ଜାନକୀକି ଭୁଞ୍ଜାଏ ମୁଁ ଜାତ ।
ରାକ୍ଷସୀଙ୍କ ବେତ୍ରାଘାତ ମାନ,ସହି ତାହା ଛାଯ୍ୟାରୂପେ ମୁହିଁ
ସେହିଦିନୁ ଦେଖ ମୋର ଦୁଃଖେ,ନ ସହିବ ସୀତାର ଯାତନା
ବଡ଼ କଷ୍ଟ ପାଉଛି ମୋ ରାମ,ଅଦୃଶ୍ୟରେ ରହିଆଉ ଦଳେ
[ ଏକ ପାଖେ ଦଣ୍ଡାୟମାନ ] [ ହନୁ ଧଳା ଘେନି ପ୍ରବେଶ । ]

ହନୁ—ଜୟ ପ୍ରଭୋ ! ଆଣିଛି କନଳ
ଶଏଆଠ ଆଣିଅଛି ଗଣି, ଦେଖ ଦେହି ପଦ୍ମ ନାହିଁ ଆଉ ।

ରାମ—[ ଫୁଲଗଣି ] ବତ୍ସ ହନୁ ! ଏକପଦ୍ମ କମି ହୁଏ କପାଁ ?
ଭୁଲରୁ କି ଆଣିବାରେ ଦେଲେ ।

ହନୁ—ପ୍ରଭୁଠାରେ ଦାସର କପଟ,
ବଡ଼ ଅସମ୍ଭବ କଥା ତୁହ ଦାଶରଥି
ଗଣିଅଛୁ ଯୋଡ଼ ଯୋଡ଼ କରି, ଏକପଦ୍ମ କମି ହେଲା କାହୁଁ ।

ରାମ—ଓଃ; ଜାଣିଲି ମୁଁ ; ଜାଣିଲି ମୁଁ,
'ମାଗୋ' ଏହାକି ତୋ ସ୍ନେହର ପରୀକ୍ଷା
ଏହା କି ସନ୍ତାନ ପ୍ରତି ଉଚିତ ଅଟଇ ।

( ବୀଣାପାଣି ଆଉ ଏତିକି—ବୃନ୍ଦେ । )

ଦୟାମୟୀ ଦୟାମୟୀ କି ଗୋ; କେ ଡାକିବ ତୋତେ କାହିଁକି ଗୋ । ପଦ । ନିର୍ଦ୍ଦୟ ହୃଦୟ ଅଟଇ ତୋର, ଦୟାମୟୀ ବୋଲି ଚାରି ଅକ୍ଷର, ଭକ୍ତ ଯେତେ ବୃଥା କହନ୍ତି, ବେଦେ ତାର ପରିଚୟ ଏହା କି ଗୋ ।୧। ପାଷାଣ ତୋ ପିତା ପାଷାଣୀ ମାତା, ଈଶାଣୀ ତୁ ଅଟୁ ତାଙ୍କ ଦୁହିତା, ତୋ ପତି ଈଶାନ ଅଟଇ ପାଷାଣ, ବଂଶଗୁଣ ଅଛି ବହି କି ଗୋ ।୨। ମାୟାମୟୀ ମାୟା କରି ମୋ ହୃତେ, ଏକ ପଦ୍ମ ତୁହି ହରିଲୁ ପଥେ । ମାଆ ହୋଇ ସୁତେ ଏହା ଯାହା କଲୁ କା ଆଗେ କହିବ ସହିଁ କି ଗୋ ॥ ମୁକ୍ତ କେଶୀ ରକ୍ତପାନେ ବାସନା; ତାହା ଖାଇ ତୃପ୍ତ ନୋହୁ ରସନା । ବଇଷ୍ଣବ ଭକ୍ତେ ଆସ ଆସ ଏବେ; ମୁଁ ତାହା ପାରିଇ ଦେଇ କି ଗୋ ।୪।



ରାମ—ଲକ୍ଷ୍ମଣରେ ! ଏତେମତେ ମାତା ଯେବେ ନୋହିଲେ ପ୍ରସନ୍ନ
କପଟ କରନ୍ତି ମୋହଠାରେ; ଏକପଦ୍ମ କଲେ ହରଣ
ତହିଁକି ମୋ ଅଛଇ ଉପାୟ
ନୀଳ ରାଜୀବଲୋଚନ ବୋଲି ସକଳେ, କହନ୍ତି ତ ମୋତେ
ଶୀଘ୍ର ଭାଇ ଦିଅ ଶରଗୋଟେ ।

ଏକଚକ୍ଷୁ ତାଡ଼ ତହିଁ ଦଅନ୍ତେ ମିଶାଇ
ହୋଇଯିବ ଶତଏଆଠ ପୂର୍ଣ୍ଣ
ପୁଷ୍ପାଞ୍ଜଳି ଦେଲେ ମାତା ହୋଇବେ ପ୍ରସନ୍ନ ।
( ଶର ଧାରଣ, ପଛେ ଦୁର୍ଗା ରାମଙ୍କର କର ଧାରଣ )

( ଜଣା ଯାଉନାହିଁ ଆଉ—ବୃନ୍ଦେ । )

ଆହା ନା କର ନା କର ରଘୁନନ୍ଦନ ହେ । ଜନକଜେମା ହୃଦୟ ଚନ୍ଦନ ହେ । ପଦ । ବସ୍ତାରିଛି ନିଜ ମାୟା, ତହିଁ ପଡ଼ ନୁହଁ ବାୟା; ତୁମ୍ଭେ ପରା ଅଟ ବିଶ୍ୱବନ୍ଦନ ହେ । ୧ । ମୁଁ ତୁମ୍ଭ ର ଆଜ୍ଞାକାରୀ, ଅଟଇ ହେ କୋଦଣ୍ଡଧାରି, ନୁଆଡରେ ଆଉ ନ କର କ୍ରନ୍ଦନ ହେ ॥ ହେ ତପନ ବଂଶ ବୀର; କାହା ପୂଜା ତୁମ୍ଭେ କର, ଶତପତ୍ର ନେତ୍ର କର ଛେଦନ ହେ । ୩ । ଉଣ୍ଣାସିବ ମନ୍ଦାଭର, ତେଣୁ ତବ ଅବତାର, ବଇଷ୍ଣବ ହୃଦେ କର ସଦନ ହେ । ୪ ।



ରାମ--ମା; ଜଗଦମ୍ବା ମହେଶ୍ୱରି ! ନିବେଦନ ଘେନତୋ ସୁତର ।

( କାନ୍ଦିଲେ କି ହେବ କରାଗ୍ରଗମନା—ବୃନ୍ଦେ । )

ହର ହରପ୍ରିୟା କର ବାରେ ଦୟା ତୋହର ଏ ଦୀନ ସୁତକୁ । ପଦ । ନାହିଁ ମୋ ଉପାୟ କେମନ୍ତେ ନାଶିବ; କହ ମାତ ଦଶ ମାଥକୁ । ସୀତା ଲାଗି ବାତ ବହ ଅବିରତ; ଅରାଉଛି ମୋର ଚିତ୍ତକୁ ।୧। ସପତ ସାଗର ବନ୍ଧାଇଲି ସେତୁ; ଘେନି ଏ ମର୍କଟ ୟୁଥଙ୍କୁ । ସମର ସମୁଦ୍ର ପାର ହେବାପାଇଁ ପାଉ ନାହିଁ ହାତ ଜାତକୁ । ୨ । ସତେ ସୀତା କାହିଁ ହୋଇବ ପ୍ରାପତ ଦେଖିବ କୌଶଲ୍ୟା ମାତାଙ୍କୁ । ଗତ ରଣେ ଶକ୍ତି ମାରି ଲଙ୍କାପତି ଗଲା ମୋ ଲକ୍ଷ୍ମଣ ଭ୍ରାତକୁ ।୩। ଏହି ମୋ ବିନତି ହିମାଦ୍ରି ଦୁହିତା ତେଜ ଗୋ ରାବଣ ରଥକୁ । ଦେଉ ମୋ କାନ୍ଦଣା ତୋତେ ଶିବ-ରାଣୀ, ବଇଷ୍ଣବ ଯୋଡ଼େ ହାତକୁ । ୪ ।



ଦୁର୍ଗା—ଦାଶରଥି ! ମନଗୁଣେ ଫଳ ଫଳୁ ତବ
ଆଜ ରାତ୍ର ହୋଇଗଲେ ଶେଷ,
କାଲ୍ ପ୍ରାତେଃ ସେଷ ହନୁମାନେ
ରାବଣର ମୃତ୍ୟୁଶର ରଖି ସ୍ତମ୍ଭେ, ପୂଜାକରେ ମନ୍ଦୋଦରୀ
ବ୍ରହ୍ମଦତ୍ତ ସେହି ବାଣ ଅଟେ ନାରାୟଣ
ବିପ୍ରବେଶେ ଯାଇଣ ମାରୁତ, ତାହା ଶୀଘ୍ର ଆଣିବ କୁରାଇ
ସେ ଶର ମାରନ୍ତେ ଦୈତ୍ୟ ନିଶ୍ଚେ ହେବ ନାଶ
ଡନନ୍ଦନ ଅଛି ତା ଆମୂଷ
ରାମ—ମା ! ଆଜ୍ଞା ତୋର ଶିରୋଧାର୍ଯ୍ୟ କର
ପଠାଇବ ପ୍ରାତେ ମୋ ଦୂତକୁ, ହେଲ ଆସି ପ୍ରଭାତ ନିକଟ
ଦୁର୍ଗା—ଚନ୍ଦ୍ରାନନେ ! ତେଜିଲ୍ ମୁଁ ଲଙ୍କାଧାମ ଆଜି
ସୀତା ଚନ୍ତା ଲଗିଲ ତୁମ୍ଭଙ୍କୁ; କଇଲାସେ ଯାଉଛି ଏକ୍ଷଣି ।
ରାବଣେ ବଧାଣି ସୀତା ନିଅ ରଘୁମଣି । [ ପ୍ରସ୍ଥାନ ]
ରାମ—ବତ୍ସ ହନୁ ! ଏହି କାର୍ଯ୍ୟ କର ତୁହି ମୋର ।
[ କର୍ପାଁ କରୁଛୁ ମୋଠାରେ ମାନ—ବୃତ୍ତେ । ]

ବେଗେ ଯାଅ ଯାଅ ଲଙ୍କାପୁର ରେ ବୀର । ବିପ୍ରବେଶେ ଯାଇ ଆଣିବୁ କୁରାଇ ରାବଣର ମୃତ୍ୟୁଶର ରେ । ସଦା ନିଜଗୃହ ସ୍ତମ୍ଭେ ରଖିକରି ଦତମ୍ଭ ପୂଜେ ରାକ୍ଷସ ଈଶ୍ବର । ସେ ଶର ଆଣିଲେ ମନ୍ଦୋଦରୀଠାରୁ ନାଶହେବ ଦଶଶିର ରେ ॥ ସାତସିନ୍ଧୁ ଡେଇଁ ମଣିଦେଲୁ ନେଇ ଭାଙ୍ଗିଲୁ ଗିରଶିଖର । ରାବଣ ମଧ୍ୟରେ ଆଣି ଅନ୍ତର୍ଦ୍ଧି ବଞ୍ଚାଇଲୁ ସହୋଦର ରେ ।୨। ହନାଦ୍ର ତନୟା କହି-ଦେଲେ ଯାହା ଦୟାବନ୍ଧ ମୋର ପର । ତୋ ବିନୁ କେ ତାହା କରିବ ସାଧନ ବୁଦ୍ଧିବଳ ଅଛି ମୋର ରେ ।୩। ତୋ ଯୋଗେ ଅସାଧ୍ୟ କାର୍ଯ୍ୟ ହେଲ ସାଧ୍ୟ ଏ ତୋତେ କେତେ ମାତର । ବଇ-ମୁବ ଚନ୍ଦ୍ର ରହିଥିବ କୀର୍ତ୍ତି ହୋଇଲେ ସୀତା ଉଦ୍ଧାର ରେ ।୪।



ହନୂ—ହେ ସୂର୍ଯ୍ୟବଂଶଚନ୍ଦ୍ର !
ତବ ନାମ ଜପିହୃଦେ ପଶିବ ଲଙ୍କାରେ
ମୃତ୍ୟୁଶର ଆଣିବ କୌଶଳେ;
ଯେବେ ଦୟାଥିବ ଦାସପରେ
ଶ୍ରୀ ଚରଣେ ଥିଲେ ଭକ୍ତି ମୋର,
ନାହିଁ କିଛି ଅସାଧ୍ୟ ତ୍ରିପୁରେ

ରାମ—ଯାଅ ବତ୍ସ ! ଆସ ବେଗକରି ।
ଚାଲ; ଆମ୍ଭେ ହେବା ଏବେ ରଣକୁ ପ୍ରସ୍ତୁତ,
ପୂର୍ବଦିଗେ ଉଦୟ ମିହିର,
ହେବ ଆଜ ତୁମୁଳ ସମର । [ ସମସ୍ତଙ୍କ ପ୍ରସ୍ଥାନ ]

[ ଗଡଦ୍ୱାରେ ଦାସୀର ଦଣ୍ଡାୟମାନ ]

ଦାସୀ—ମୋତେତ ରାଣୀ କହିଥିଲେ ଏଇଠି ଠିଆ ହବାକୁ, ନଡେଇରେ କଅଣ ହଉଚି ଜଣା ଗଲନାହିଁ । ଆଜିକି ଚାରିଦିନ ହେଲ ରାଜା ଆପେ ଲଢୁଛନ୍ତି । ତେବେକେ ସେ ଜାଆଁଲଗା ମାଙ୍କଡଗୁଡାକ ମରୁଛନ୍ତି କି ? ସେ ଯେଉଁ ଘରପୋଡା ଝଣ୍ଟିଆ ଡାଙ୍କଣା, ତା କଥା ରାଇଜରୁ ବାହାର ସେ ଦିନତ କେତେ ଲୋକଙ୍କୁ ରାଣ୍ଡ କରିଗଲ । ଏକା ଆମର ତାଙ୍କୁ ନ ମାରି ଥାଆନ୍ତା କି ? ଏକା ଘୁପଡାରେ ମୁଣ୍ଡ ଛିଣ୍ଡେଇ ଦେଲ । ମତେତ ଜମା ସତରବରଷ ପାଖିଁ ମାସ । ଏ ବୟସରେ ମୁଁ କେମନ୍ତେ ଦିହ ସମ୍ଭାଳି ରହିବି । ରାତଯାକତ ନିଦ ମାଡୁନାହିଁ । ଏକରି ସେକରି ହେଉଚି । ଏ କିଏ ଲୋ ! ବାପା ଏ ଫେର କୁଆଡୁ ଅଇଲ, ଏତ ଗୋଟାଏ ବୁଢା ବ୍ରାହ୍ମଣ । ପାକିଲ ବାଳ, ବାପରେ ଝେଁ ଝେଁମ୍ବି କାଶ । ବାପରେ ଠକଠକିଆ ଚାଲି ଆସୁଁ ଏଇଆଡେତ ଆସୁଛି, ଏ କିଏରେ ?

( ହନୂର ଦାସୀ ନିକଟେ ପ୍ରବେଶ । )

( ଯାଅନା ଯାଅନା ତୁ ଉସୁନା—ବୃତ୍ତେ । )

ହନୂ—ଉଡ଼ଠୁ ଉଡ଼ଠ୍ ଟୋକୀ ଦୁଆର ମୁହଁରୁ
ଭୁଉଡ଼ୁ୨ କେତେ ହେଉଲେ ବସି ।
ଦାସୀ—ମୁଉଡ଼ୁ ମୁଉଡ଼ୁ କର ଗୁହୁଁକୁ ଖଣ୍ଡିଆ
ଖୁଣ୍ଡି୨ କର କେତେ ମରୁଛୁ କାଶି ।
ହନୂ—ତୁଉଟି ତୁଉଟି କେତେ କହୁଛୁ ଏତେ,
ଝିଇଟି ପିଇଟି ହୋଇ ଲଗୁଛୁ କେତେ ।
ଦାସୀ—କୁଉଡ଼ୁ୨ କର କାଟିବ ତୋ କାନ,
ବସି କାନ୍ଧୁଥିବୁ ପିଠିଆଉଁସି । ୧ ।
ହନୂ—ଘୁଉଣି ରାଅଣ୍ଡୀ ଗଣ୍ଡି କରୁଛୁ [ ବୋଲ, ]
ବୁଢାଦେଖି ମୋତେ ଦେଖାଉ ନାଲ୍ ।
ଦାସୀ—ଛୁଣ୍ଡା ପାଟଣ୍ଡାଇ ଆଣି ପିଟିବା
ପିଠି ଛୁଣ୍ଡାଇବ ତୋ ନାକକୁ ଘସି । ୨ ।
ହନୂ—ଯାଆ ଯାଆ ରାଣୀ ଆଗେ କହିବ,
ଆଜ ରାଜକର ତୋତେ ବାହା ହୋଇବ ।
ଦାସୀ—ବଇମ୍ବା ବୋଲଇ ଥାଆରେ ବ୍ରାହ୍ମଣ
ବହିନ ଖବର କହିବ ଆସି । ୩ ।



*ହନୁଆ ତୁ ଏଇଠି ଜଗିଥା, ମୁଁ ଯାଉଛି ରାଣୀଙ୍କ ଆଗ-ଆଗେ ତୋ ନଜାହାତ ବୁଝିବି । ଏଇଠା ବୁଢ଼ା ନ ହୋଇ ଟୋକା ହୋଇ ଥାଆନ୍ତା କି ମଦଙ୍ଗର ମାଡଙ୍କର ରଖି ନିଅନ୍ତ । ଏଇଠାରତ ଅବସ୍ଥା ନାହିଁ ଏଇଠା ମୋର କଅଣ କରି ପାରିବ ? ଏଇଠି ଥା, ଜୁଆଡେ଼ ଗଲେ ଏ ମୁଣ୍ଡି ଝାଡ଼ୁଣୀ ତୋ ପିଠିରେ ଖରଚ ହେବ ।

ହନୁ—ଓଃ, ଟୋକୀଟା କେଡ଼େ ବାହାବାଲୀ । ପହଡ଼େ ହେଲ ଫଟେଇ ଫୁଟେଇ ଦେଲଣି । ମିଛରେ ରାଜା ଏ ଗୁଡ଼ାକ କାହିଁକି ପୋଷୁଛନ୍ତି । ରାଣୀ ଆସୁଛନ୍ତି ପରା ! ଗହଣା ଶବ୍ଦ ଶୁଭୁଛି, କି ନ ହେଲେ ରାଣୀଟାଠାରେ କାହୁଁ ଗହଣା ଆସନ୍ତା । ହଉରେ ବାବା, ଆଉ ଦଶଘଡ଼ିକେ ରାଣୀ ଦାସୀ ଉଭୟେ ସମାନ ।

( ମନ୍ଦୋଦରୀର ପ୍ରବେଶ ।)

ମନ୍ଦୋଦରୀ—ଦ୍ୱିଜବର ! ପ୍ରଣାମ ଚରଣେ ।

ହନୁ—ଅହ୍ୟସୁଲକ୍ଷଣୀ; ହୁଅ ମା ।

[ ମନ୍ଦୋଦରୀ ଗୀତ । ]

( ବୀରବର ହର ମୋର ଅପମାନ—ବୃତ୍ତେ । )•

କେଉଁ କାର୍ଯ୍ୟେ ଏଥି ଆଗମନ ହେ । କହ ଦ୍ୱିଜ । ଅଭାଗିନୀ ଶିରେ ଦିଅ ପଦରଜ । ପଦ । ଆଜକୁ ହୋଇଲା ଗୃହଦହନ, ମୃତ୍ୟୁକ୍ଷେତ୍ରେ ଗଲେ ଜୀବଧନ । ବିନାଶିବେ ବୋଲି ତହିଁ ରଘୁରାଜ ହେ ।୧। ମେଘନାଦ ବଧ ହେଲ ଦିନୁ, ଦିନ୨ କ୍ଷୀଣ ହୁଏ ତନୁ । ପିନ୍ଧା ବସନ ଲାଗଇ ଯେତେହୁ ବୋଝି ହେ । ୨ । ନର ବାନରଙ୍କ ଘୋଟଗ ଲଙ୍କା । ଘରେ୨ ପଡ଼ିଅଛି ଡକା । ଯାହା ଶୁଣିଲେ ହୋଇବ ଲୋକେ ଲାଜ ।୩। ଜାଣ ଯେବେ ରକ୍ଷା କଥା କିଛି, କହ ତୁମ୍ଭ କର ଧରୁଅଛି । ବଇଷ୍ଣବ ବୋଲେ ମନୁ ଛନ୍ଦ ତେଜ ହେ । ୪ ।

---

ହନୁ—ମହାରାଣୀ ! ମୁଁ କିଛି ଯୋଗମାର୍ଗ ଓ ଜ୍ୟୋତିଷବିଦ୍ୟା ଜାଣେ । ଯୋଗରେ ଜାଣିଲି ଯେ ରାଜାଙ୍କୁ ମନ୍ଦଦଶା ପଡ଼ିଛି । ମୁଁ ସେହି ଖବର କହିବାକୁ ତର୨ ହୋଇ ଧାଉଁଛି, ଆପଣ ତାର କିଛି ପ୍ରତିକାର କରି ପାରିବେ କି ?

ରାଣୀ—କରିବି ନାହିଁ କାହିଁକି, ଯେବେ କିଛି ଉପାୟ ଅଛି

ତେବେ ଅଧୀନୀକି କହ୍ନ କରି ପତିବଚ୍ଛେଦ ଜ୍ୱାଳାରୁ
ମୁକ୍ତ କରନ୍ତୁ; ଆପଣ ମୋର ଧର୍ମର ପିତା ।
ହନୂ—ଏତେବେଳେ ବାଗରେ ପଡ଼ିଛି; ଏଠି କିଛି ଅସୁରଆ
ବୁଦ୍ଧି ନ କାଢ଼ିଲେ ହବ ନାହିଁ; ରାଣୀ ! ଆପଣ ଟିକିଏ
ରାଜାଙ୍କର ଜାତକ ଆଣ, ଦେଖିଲେ ସବୁ କହିଦେବ ।
ରାଣୀ—ହଉ ତେବେ ମୁଁ ଜାତକ ଆଣେ ( ଜାତକ ଦେବା )
ହନୂ—(ଜାତକ ଦେଖି) ରାଣୀ ଗୋଟିଏ ଫଳର ନାମ କହନ୍ତୁ -
ରାଣୀ—ଶ୍ରୀଫଳ ।
ହନୂ—ଶ୍ରୀଫଳେ ଫଳବାନ୍ ଭୂୟଂ, ଭୂୟ ମଧ୍ୟେ ହାହାକାରଃ ।
ଭୀଷଣ ସମରେଶ୍ଚୈବ, ଦୁଷ୍ଟଯୋଗ ପ୍ରବଂଚକଃ ।
• ନାରୀଲୋଭ ପ୍ରଲୋଭେନ, ଶରଘାତେ ନିପାତତ ।
ମହାଦେଈ ! ପ୍ରଶ୍ନ ବଡ଼ ମନ୍ଦ ଲେଖିଲ, ରାଜାଙ୍କର ଗୋଟିଏ
ସ୍ତ୍ରୀ ଯୋଗେ ଜଣେ ଯୋଗୀ ହାତରେ ମୃତ୍ୟୁ । ରାଜାଙ୍କୁ ବର୍ତ୍ତମାନ
ଚତୁର୍ଥ ବୃହସ୍ପତି । ଶୀଘ୍ର ଗ୍ରହ ଶାନ୍ତିର ଯୋଗାଡ଼ କରନ୍ତୁ ।
ରାଣୀ—କହନ୍ତୁ ଗୋସାଇଁ କିସ ଲୋଡ଼ାହେବ ତହିଁ ।
ହନୂ—ଗ୍ରହପୂଜା ଅର୍ଥେ ଆମ୍ବ ପାଚିଁମାଣ ଖଇ । ୧ ।
ରାଣୀ—କଳା ଧଳା ମୁରୁଜ କାଠନ୍ତି ମହାତଲେ ।
ହନୂ—ହିଁ, ଅରୁଆଚାଉଳ ଆମ୍ବପତ୍ର ଆଣ ଡାଳେ । ୨ ।
ରାଣୀ—ଶୁଣିଅଛି ଲାଗେ ତହିଁ ପଞ୍ଚବର୍ଣ୍ଣ ଫୁଲ ।
ହନୂ—ଖସାଲଡ଼ୁ ସହିତରେ ଆଣ ନାରିକେଳ । ୩ ।
ରାଣୀ—ଆଉ କେବଣ ପଦାର୍ଥ ହେବ ତହିଁ ଲୋଡ଼ା ?
ହନୂ—ପାଚିଁଗାଈ ଗୁଆ ପଞ୍ଚାମୃତ ଆଉ ଥୋଡ଼ାଁ ।
ରାଣୀ—ଏ ସବୁ ପଦାର୍ଥ ଆଣି ଦେବ ଏହିକ୍ଷଣି ।
ହନୂ—ଆଗେ ନୃସିଂହର ମୁଁ ପୂଜିବ ପାଟରାଣି । ୪ ।
ରାଣୀ—ମନାଅଛି ନ କହିବ ସେହି ଶର କଥା ।
ହନୂ—ବିପଦ ବେଳକୁ ହିତକଥା ଲାଗେ ପିତା । ୬ ।

ରାଣୀ—ଏହି ସ୍ତମ୍ଭେ ଅଛି ଶର ପୂଜୁଥା ଆପଣ ।
ହନୂ—ଅତସୀକୁସୁମ ଦାସୀ ସଙ୍ଗେ ଯାଇ ଆଣ । ୭ ।
ରାଣୀ—ହେ ଗୋସାଇଁ; ତୁମ୍ଭଙ୍କୁ ଏକା ଛାଡ଼ିଯିବି ମୁଁ କେମନ୍ତେ ।
ହନୂ—ଆମେ କଣ ପଳାଇ ଯାଉଛୁମା; ତେବେ ଦରଜା ସବୁ
ବନ୍ଦ କରିଯା, ଶୀଘ୍ର ଆସିବୁ ।
ରାଣୀ—ହଉ ତେବେ ମୁଁ ଦରଜା ସବୁ ବନ୍ଦ କରି ଯାଉଛି ।
[ ଦାସୀସହ ପ୍ରସ୍ଥାନ ]
ହନୂ—ପଣ୍ଡାପଣ୍ଟି କରି କାମଟା ହାତକୁ ଆଣିଛି; ଏବେ ଶର
ନେଇଯିବି କେଉଁବାଟେ, ଦରଜାତ ସବୁ ବନ୍ଦ କରିଗଲା
ତେବେ ନିଜରୂପ ଧରି ପାଚେରି ଡେଇଁବି ।
[ ଖମ୍ବ ଭାଙ୍ଗି ଶର ନେଇ ପଳାୟନ ] ରାମଚନ୍ଦ୍ର ହେ ରକ୍ଷାକର ।
ରାଣୀ—ଦାସୀସହ ପ୍ରବେଶ । [ ସ୍ତମ୍ଭଭଗ୍ନଦେଖି ]
ଦାସୀ ଗୋ, ବ୍ରାହ୍ମଣ କାହାନ୍ତି ?
ହା ପ୍ରାଣନାଥ, ସତେ ମୁଁ ତୁମ୍ଭକୁ ପାଇବି । [ପତନ]
ଦାସୀ—ମହାଦେଈ ! ଉଠ, ଆଉ କାନ୍ଦିଲେ କଣ ହେବ, ପାଣି
କାହିଁ, ରାଣୀତ ଏକାବେଳକେ ବେହୋସ, ମୁଁ ଜାଣେ
ସେ ଖଣ୍ଡିଆ ଯେତେବେଳେ ଆସିଥିଲା ସେମାନଙ୍କ ପରି
ବରବର କନ କନ ହଉଥାଏ, ଉଠ ଗୋ ଉଠ ।

[ ମନ୍ଦୋଦରୀଙ୍କର—ଗୀତ ]
( ନାରୀ ଜନ୍ମ ହୋଇ କାଏ-ବୃଥାରେ )

ଦାସୀ ବୁଦ୍ଧି ହୁଡ଼ିଲି, ଅନିଳନନ୍ଦନକୁ ଆଜ୍ଞା କରୁଛାଡ଼ିଲି
ଗୋ । ପଦ । ମନ୍ଦବହି କଲି ଛନ୍ଦ, ଜାଣୁ ଜାଣୁ ହେଲି ଅନ୍ଧ ।
ଆହା ନିସ ହେଲି କାହା ଫାନ୍ଦେ ପଡ଼ିଲି ଗୋ । ୧ । ସେମାନ
ହାତେ ଘର ଗଲା, ଦେଲି ମୁଁ ତଲେ ନ ଭାବି । ତୁଣ୍ଡରେ
କୋଡ଼ିଏ ଯାହା ମୁଣ୍ଡ କୋଡ଼ିଲି ଗୋ ।୨। ଠକଆ ଆସିଲା କାହୁଁ,

ଠକି ଦେଲା ଗୃହୁଁ ଗୃହୁଁ । ଶରଦେଇ ଚନ୍ଦ୍ରା ସରସୀରେ ବୁଡ଼ିଲା ଗୋ । ୩ । ବାଣ ନେଲା ଯମଦୂତ, ପ୍ରାଣକାନ୍ତ ହେବେ ହତ । ବଇ ବୋଲେ କରୁ ସୁନା ଚୂଡ଼ି କାଢ଼ିଲା ଗୋ । ୪ ।



[ ଦାସୀର ରାଣୀପ୍ରତି ଗୀତ ]

ଯାହା କରମରେ ଯାହା ଲେଖାଥାଏ ଦଇବ ଘଟାଏ ଆଣି ଗୋ । ଆଉ ନ ଭଲ ନ ଭଲ ରାଣୀ । ପଦ । କାହାକୁ ନ ରୁଚେ ଖଣ୍ଡ କ୍ଷୀର ସର କାହାକୁ ନ ମିଳେ ଖୁଦ । କେ ଗଡ଼େ ଧୂଳିରେ ଫୁଲ ଶେଜ ପରେ କାହାକୁ ନ ମାଡ଼େ ନିଦ ଗୋ । ୧ । ଆଜ ଯେହୁ ରଜା କାଲି ସେ ପରଜା, ଦୁନିଆର ଏହି ରୀତ । ଆଜ ଛିଣ୍ଡାକନା ନ ମିଳେ ଯାହାକୁ କାଲି ସେ ଚଢ଼ଇ ହାତୀ ଗୋ ।୨ ଝୁଲି କନ୍ଥା ଘେନି ଗାଆଁ ଗାଆଁ ବୁଲି ମାଗୁଥାଏ ଯେହୁ ଭିକ । ଅରୁଣଧାରୀ ସେ ବିଧାତା କରୁଣା କଲେ ହୁଏ ବଡ଼ଲୋକ ଗୋ । ୩ । ଯେତିକି ଦିନକୁ ଆଣି ଥିଲା ଯାହା ହୋଇଗଲା ଭୋଗାଭୋଗ । ବଇଷ୍ଣବ କହି ଏଣିକି ବହି ଦେଲା ଆଣି ଚନ୍ଦ୍ରା ରୋଗ ଗୋ । ୪ ।



ରାଣୀ—ଦାସୀ ଗୋ, ମେଘନାଦପରି ପୁଅ ମରିଥିଲା ଜାଣି ନ ଥିଲି ; ଏଣିକି ସବୁ କଥା ମନେ ପଡ଼ିବ ।

ଦାସୀ—ମହାଦେଈ ! ଚାଲ; ଆଉ ସେ କଥା ଭାବ ନା, କରମ ଆଦର ରହିବ । କରମଠୁଁ ବଡ଼ଲୋକ କେହି ନାହିଁ ।

 [ ପ୍ରସ୍ଥାନ ]

୨ୟ ଦୃଶ୍ୟ ।

( ସୀତା ଓ ଚଣ୍ଡୋଦରୀ ଓ ରକ୍ତମୁଖୀ ଅସୁରୀ-ଦ୍ୱୟ )

ଚଣ୍ଡ—ଆଲୋ, ରାମାଭରିଯା, ରାବଣକୁ ମଙ୍ଗ, ଏମନ୍ତ କାହିଁକି ହଉଛୁମ, ନଇଁ ଏ ରାବଣେଶ୍ୱର ମାଇପ ହେଲେ ଏ

ଅଚଳାଚଳ ସମ୍ପତ୍ତି ତୋର । ଯେତେବେଳେ ଯାହା ଖୋଜିବୁ ସେ ଭଜ ପାଇବୁ, ବନରେ କଣ୍ଟାପଥରରେ ପଡ଼ି ପଡ଼ି ଦେହସବୁ ବଧୀର ହୋଇଯାଇଛି । ଅଲେ; ଏ ସୁନା ଖଟରେ ତୁଳା ଶେଯରେ ଶୋଇବୁ ।

ରକ୍ତ—ଆଲେ ସେଇଟା କଣ ମାଇକିନିଆ କମ, ଆମକୁ ପରି କହୁଥିଲେ ଆମେ କେଉଁଦିନ୍ନୁ ରାଜା ହୁଅନ୍ତୁଣି, ତୋଠେଇଁ ଏତେ ରସ ପଡ଼ିଛି କାହିଁକିନ, ତୁ କଣ ଆମଠୁ ବେଶୀ-ସୁନ୍ଦରୀ । ନା, କଣ, ତୋର ହାତବଡ଼ ନା ଦାନ୍ତବଡ଼ ନା ନାକବଡ଼, କୋଉଁ କୋନ୍ କଥାଟା ବଡ଼ ? ଆଲେ ମଙ୍ଗିଯା

---

( ଦେଖିବୁ ଆଲେ ଗୁନ୍ଦିଆ ମା—ବୃନ୍ଦେ । )

[ଆଲେ] ରାଜା ଭାରିଯା ହୋଇଲେ ମଜା ପାଇବୁ କେତେ ଲେ । ପୋଇଲ୍ ଗୁଡ଼ା ଯୋଡ଼ାକୁ ଯୋଡ଼ା ଖଟିବେ କେତେ ଲେ ॥ କଳାଝିମିଷି ପାଟଶାଢ଼ୀ, କାଙ୍କୁଲ ପଲା ଜରିଧଡ଼ି । ଗୋରାଦିହକୁ ଦଶିବ ତୋର୍ ଜାଣିଥା ଏତେ ଲେ । ୧ । ବାସନା ତେଲ ଆଣି, ତୋର ବାଳ ସଜାଡ଼ିବେ ପୁଣି । ଚୁଆ ଚନ୍ଦନ ଅତର ଗୋଳି ବୋଳିବେ କେତେ ଲେ । ୨ । ଫୁଲର ବିଛଣାପରେ, ଶୋଇ-ଥିବୁ ଯେତେବେଳେ, ରାଜା ପରି ରସିକ ଟୋକା ପାଇବୁ ସେତେ ଲେ । ୩ । ହୀରାପଥରର ଚୂଡ଼ି, ନାଇବୁ ଯୋଡ଼ିକି ଯୋଡ଼ି । ନାକର ଲବ ଦେଖିଲେ ଜନ ଗାଇବେ ଗୀତେ ଲେ । ୪ । ଆଜି ମରିବ ରାମା ତୋର, ତେଣେ ଲାଗିଛି ଲଢେଇ ଘୋର । କହେ ବଇଦ୍ୟ ନ ହେଲେ ଏହା କହିବୁ ମୋତେ ଲେ । ୫ ।

---

ରାଣ୍ଡ—ମଲ ଏଇଟାତ କିଛି କହୁନାହିଁମ, ଆଣିବୁ ଲେ ବେତ ।

ରକ୍ତ—ଆଲେ ବେତ କଣ ହେବ, ମୋ ଦାନ୍ତକୁ ନାହିଁ । ମାଙ୍କଡ଼ ଟୋକୀର କେତେ ହାଲକା । ଛମାସ ହେଲ ଫଟେଇ

ଫୁଟେଇ ଦେଲଣି । ସେ କାଣ୍ଡ ଆଗେଉଁ ଏତେ ରସ ପଢୁଛି କାହିଁକି । ଆଉ କଣ ରାଜା ହାତରୁ ରାମ ସତେ ବର୍ତ୍ତିବ । ଯା, ଏଣିକି ସବୁ ଛାଡ଼; ଆମ ରାବଣର ହେଲୁଣି ।

( ଦାସୀର ପ୍ରବେଶ )

ଦାସୀ—ସବୁ ସରିଲା ଲେ; ସବୁ ସରିଲା; ଯୋଉଁ ରାଜାଙ୍କର ମରିବାଶର ଖୁମ୍ବରେ ଥିଲା ତାକୁ କିଏ ନେଇ ପଳାଇଗଲାଣି ରାଣୀ କାନ୍ଦି୨ ବେହୋସ ହୋଇ ପଡ଼ିଛନ୍ତି, ଚୂଡ଼ି ଭଙ୍ଗା ହୋଇଛି । ଦେଖିବ ଆସ ଲେ ଦେଖିବ ଆସ ।

[ଝିଅମ୍ନେ]—ଦେଖିବା ଚାଲରେ ଦେଖିବା ଚାଲ, ଏ ସବା ଖାଇ ଲଙ୍କା ଡାଙ୍କୁଣୀ ସବୁ ସାରିବ । ରଜା ଏତେ ମେହନ୍ତ କରି ଆଣିଥିଲା ବନେ ହେଲେ ଭୋଗ କରି ଥାଆନ୍ତା । ଦେଖିବା ଚାଲ ଲୋ ଦେଖିବା ଚାଲ ।

 (ସମସ୍ତଙ୍କ ପ୍ରସ୍ଥାନ)

ସୀତାଙ୍କର ହନୂମାନଙ୍କୁ ପ୍ରଶଂସା ।

( ଚାଲ ଚଲ ରାଧିକା ଲଳିତା ବିଶାଖା,—ବୃତ୍ତରେ । )

ଧନ୍ୟ ଧନ୍ୟ ବୀର ପବନ କୁମର ଅତୁଳରେ ବୀରକେଶରୀ । ରାମକାର୍ଯ୍ୟ ରହି ଡାକୁଛୁ ଯେମନ୍ତ, କେ ହେବ ତୋ ସମସର । ପଦ । ଧନ୍ୟ ତୋର ମାତା ଅଞ୍ଜନା ଗରଭ, ତୋ ପରି ଭକତେ ଦେଇଥିଲା ଠାବ । ଜନ୍ମ ହେଲାକାଳେ ବାନ୍ଧିଲୁ ଲାଙ୍ଗୁଡ଼େ ରବିରଥ ଯାଇକରି ॥ ପର୍ବତ ମୁଣ୍ଡାଇ ବାନ୍ଧିଲୁ ସାଗରେ, କେତେ କେତେ ଦୈତ୍ୟନାଶିଲୁ ରଙ୍ଗରେ । ନ କରିଣ ଶଙ୍କା ଆଗେ ଆସି ଏକା ପୋଡ଼ିଲୁ ଲଙ୍କାନଗରୀ । ୨ । ଯେତେ୨ ରାମ କାର୍ଯ୍ୟ କଲୁ ଭବେ; କହୁଥିଲେ ତାହା ନା ସରିବ କେବେ । ବଇଷ୍ଣବ ହେବେ ତୋହପରି କେବେ ହେବ ସେହିନାମ ଧରି । ୩ ।



# ତୃତୀୟ ଅଙ୍କ ।

( ୧ମ ଦୃଶ୍ୟ । )

ରାମ ଲକ୍ଷ୍ମଣ, ବିଭୀଷଣ ପ୍ରବେଶ ଓ
ହନୁର ଶର ନେଇ ପ୍ରବେଶ ।

ହନୂ—ନାଥ ପ୍ରଭୁ ଆଣିଅଛୁ ବାଣ, ନଇଁ୍ୟରେ ନାଶ ନିଶାଚରେ

( ବାଣ ପ୍ରଦାନ, ରାମ ଶର ଦେଖି )

ରାମ—ଧନ୍ୟ ବତ୍ସ ! ତୋର ସାହାସକୁ ଧନ୍ୟ ।
ଚାଲ ସର୍ବେ ମାତ ରଣରଙ୍ଗେ,
ହେବ କ୍ଷାନ୍ତ ଜାନକୀ ଉଦ୍ଧାର
ସଖେ ବିଭୀଷଣ ! ଚିହ୍ନ ଏହି ରାବଣର ମୃତ୍ୟୁଶର କିନା ?

ବିଭୀ—ବ୍ରହ୍ମଦତ୍ତ ଶର ଏ ରାଘବ,
ଜୟଲକ୍ଷ୍ମୀ ଚଳଣ ପଡ଼ିବେ, ଏହି ପକ୍ଷେ
ନିଃସନ୍ଦେହ ମରିବ ରାବଣ, ଚାଲଶୀଘ୍ରେ ଆରମ୍ଭିବାରଣ

[ସମସ୍ତେ]— ଜୟ ରାମଚନ୍ଦ୍ରଙ୍କର ଜୟ ।

[ ରଥ ଘେନି ମାତଳିର ପ୍ରବେଶ । ]

ରାମ—କେ ତୁମ୍ଭେ ? କି କାର୍ଯ୍ୟେ ଏଥି ହେଲ ଉପଗତ ?
ଏ ରଥ କାହାର ? ଶୀଘ୍ର ଶୀଘ୍ର କହ ମୋର ପାଶେ ।

ମାତଳି—ରଘୁମଣି ! ଏବେ ଶୁଣ ମନ ସ୍ଥିରେ ।

( ଯାଅ ଗୋ ଉର୍ବଶୀ ବହନ ଯାଅ —କୁଟେରୀ )

ରଘୁନାଥ ମୁହିଁ ଆଣିଛୁ ରଥ । ପଠାଇଲେ ଶଚୀଦେବୀଙ୍କ କାନ୍ତ । ପଦ । ଚଢ଼ି ପୁଷ୍ପକରେ; ଦୈତ୍ୟ ରଣ କରେ । ତୁମ୍ଭେ ଯିବି ଅଛ ରହିଣ ପଥ ॥ ଦେବେ ସ୍ୱର୍ଗ ରହି,ନ ପାରିଲେ ସହି । ରଥେବିଜେ କର କୋଦଣ୍ଡହସ୍ତ ॥ କାଟ ଦଶମୁଣ୍ଡ,କର ଖଣ୍ଡଖଣ୍ଡ, ଧରା ନିବାରଣେ ହୋଇଛ ଜାତ । ୩ । ଆଉ ନାହିଁ ଶଙ୍କା,ଜୟ ହେବ ଲଙ୍କା । ବଇ ଭକ୍ଷେ କହିଛନ୍ତି ବିଧାତା । ୪ ।

[ ରାମଚନ୍ଦ୍ର ରଥାରୋହଣ ]

ରାମ—ଆରେ ଆରେ ପାପି ନିଶାଚର; ଆସ ଶୀଘ୍ର କର ରେ
ସମର, ଦେଖ ଦେଖ ଉନ୍ମତ ପଥ ଗୃହିଁଛନ୍ତି
ଯିବାକୁରେ ହୁଅ ଅଗ୍ରସର ।

ରାବଣ—କି ଆଶ୍ଚର୍ଯ୍ୟ ! ରଥ କାହୁଁ ପାଇଲ ସନ୍ନ୍ୟାସୀ ।
ଓଃ ! ଜଣାଗଲା, ଏ ରଥ ଅଟଇ ବାସବର ।
ବସିଅଛି ସାରଥି ତାହାର,
ରେ ବିବୁଧେ ! ସକଳେ କି କଲ ସୁରାପାନ
ଜ୍ଞାନଶୂନ୍ୟ ହୋଇଲ ରେ ମୂର୍ଖ ?

( ଜୟ ପ୍ରତାପୀ ମନୁଷ୍ୟନରେଶ—ବୃନ୍ଦେ )

ଦେବେ ତୁମ୍ଭର କଥା ଗଲା ଜଣାରେ । ଆମ୍ଭି ଥାଉଁ ଥାଉଁ କି ହୋଇଲ ଏମନ୍ତ ରେ । ସଦା । ଜାଣିନାହଁ କିରେ ତୁମ୍ଭେ ରାବଣପ୍ରତାପ, ଏଣିକି ଭରସା ହୋଇବ କେଉଁ ବାପ, ରକ୍ତ ପିଇବ କରି ନିଶେଷ ସମରେ । ୧ । ଯୋଡ଼ଯୋଡ଼ କରି ବାନ୍ଧି ପୋଡ଼ିବ ଅନଳେ, ଅମରାବତୀକି ତାଙ୍କୁ ବୁଡ଼ାଇବ ଜଳେ, ଜୟ ଜୟ ବାଜିବ ବାଜଣାରେ । ୨ । ବେଳକାଳ ଜାଣି ନ ହୋଇଲ ମୋର ବାଧା । ରେ ନିର୍ଲଜ୍ଜ ଦିନ ନ ସରିବ କାହିଁ; ତୁମ୍ଭ ବୁଦ୍ଧି ହୋଇଯିବ ବଣାରେ ॥ ମୂଢ଼ ଦେଶଦେଶ ରାବଣ ବୁଝିବ ତୁମ୍ଭ ମଜା,– ଯତେକ ହାତରେ ମୋତେ ଦେଉଅଛ ସଜା । ବଇକୁଣ୍ଠବର ଏହି ଧାରଣାରେ । ୪ ।



ରାବଣ—ଆରେ ଭଣ୍ଡ ଜଟାଧାରୀ, ରଣଭୀରୁ ନୁହେ ଦଶାନନ
ବ୍ରହ୍ମାବରେ ବଳୀ ମୁଁ ତ୍ରିପୁରେ
ମାର୍କଣ୍ଡ ଭଲ୍ଲୁକଙ୍କୁ ଦେଖି ପ୍ରାଣେ ନାହିଁ ମୋତେ
ସୀତା ନେବା ବାସନା ତୁ ଛାଡ଼ ଆରେ ଯତି
ତୋର ଦ୍ୱାର ଶୂର୍ପଣଖା ଜାଣିଅଛି ମୁହିଁ
ଭରତ ହୋଇଲା ରାଜା ତୋତେ ତଡ଼ି ଦେଇ ।

ରାମ—ବୃଥା ବାକ୍ୟ ନ କହଅ କାଳ
ରଣେ ଶୀଘ୍ର ହୁଅରେ ପ୍ରବୃତ୍ତ । ( ଯୁଦ୍ଧ )
ରାବଣ—ଗୃହୁଁ ୨ ରଥଅଶ୍ୱ କାଟିଲୁ ଶବର
ଉତ୍ପ୍ରାଧ କରଣ ମୁହିଁ କରୁଥିଲି ରଣ
ବାଳକ ବୋଲିଣ ଦୟା ଥିଲା ମୋର ମନେ
ଆଉ ଏବେ ରକ୍ଷାନାହିଁ ବନବାସୀ ତୋର । ( ଯୁଦ୍ଧ )
ଦଣ୍ଡମାତ୍ର ସମୟ ମୋ ଲେଡା,
ପରେ ପୂର୍ଣ୍ଣହେବ ଋଣଶୋଧ
ରାବଣର ସ୍ତବ ।
( କହ କରୁଣାସାଗର ହେ—ବୃତ୍ତେ )
ନମୋ ଶତପତ୍ରଲୋଚନ ହେ, ହେଳା କର କାହିଁକି ଆଉ ।
ତୋର ନାମ ମାଳା କର ହେ ମୁରାରି ସୁଖେ ମୋ ଜୀବଯାଉ ।ପଦ
ବିନାଶିଣ ମୋତେ ଅନେକବାର, ମୋକ୍ଷ ନ ଦେଲ ହେ ଜାନକୀ-
ବର । ଏ ରାକ୍ଷସଘଟ କର କର ନଷ୍ଟ ଆଉ କଷ୍ଟ ନ ସହୁ । ୧ ।
ରାମଚନ୍ଦ୍ର ଦୟାଚନ୍ଦ୍ର ଉଇଁଲେ,ମୋ ଦୁଃଖ ଅନ୍ଧାର ଘୁଞ୍ଚିବ ଭଲେ
ଦାସ ଦୋଷ ଧରି ପ୍ରଭୁ ତଳେ ରୋଷ କ୍ଷମା କରିବ କେହୁ । ୨ ।
କାଟ ମୋର ମୁଣ୍ଡ ବୈକୁଣ୍ଠେ ଯିବି; ଏ ଦେହେ କେତେ କଷ୍ଟ
ପାଉଥିବି, ତୁମ୍ଭେ ଇଷ୍ଟ ମୋର ଦୁଷ୍ଟ ବୁଦ୍ଧି ହର ଘୋଟିଛୁ
ପାପରାହୁ । ୩ । ଯେ ଚରଣୁ ଗଙ୍ଗା ହୋଇଣ ଜାତ, ପବିତ୍ର
କଲା ଏ ଭୂମି ଭାରତ, ବଇଷ୍ଣବ ଭାଳେ ତୋ ଚରଣ ତଳେ;
ସଦା ମୋ ଚିତ୍ତ ଥାଉ । ୪ ।



ରାବଣ—ହେ ନୀଳରାଜୀବଲୋଚନ ! ହେ ଅହଲ୍ୟାଭଞ୍ଜନ !
ହେ ଅଧମନାଶନ ଏ ରାକ୍ଷସଜନ୍ମରୁ ଶୀଘ୍ର ଉଦ୍ଧାରକର ।
ରାମ—ଷଡ଼ମିତ୍ର ! କେ କହେ ରାବଣ ପାପୀ ? ମୋର ପ୍ରକୃତଭକ୍ତ

( ଜୟ ଜୟ ସୂର୍ଯ୍ୟକୁ ଭୁମୃର ରେ - ବୃତ୍ତେ )

ଫେରି ଯିବ ଅଯୋଧ୍ୟା ଭୁବନେ ରେ । ସତ୍ୟମୈତ୍ରି । ପଦ । ବିଭୀଷଣେ ନେଇ ଯାଉ; ସୁଖେ ତାହାଁ ରାଜା କର; ବସାଇଣ ରାଜସିଂହାସନେ ରେ । ୧ । ସତ୍ୟ କରିଥିଲୁ ପୂର୍ବେ; ବିନାଶିଣ ଦଶଗ୍ରୀବେ, ସ୍ଥାପିଥାନ୍ତି ଏ ଲଙ୍କାଆସ୍ଥାନେ ରେ । ୨ । ସୀତାରେ ମୋ ନାହିଁଆଶ; ରାବଣେ ନ କର ନାଶ, ବୁଲୁଥିବ ଏ ଲଙ୍କା ଆସ୍ଥାନେ ରେ । ୩ । ବଧିବ ଯେବେ ଭକତେ; କେ ଆଉ ଭଜିବ ମୋତେ, ବଇ ଘାତକ ନ ବୋଲିବେ ଜନେ ରେ । ୪ ।



ଲକ୍ଷ୍ମଣ—ହେ ଅଗ୍ରଜ, କହ କିପାଁ ଏସନ ବଚନ

ମହାମାୟାଧାରୀ ସେ ରାକ୍ଷସ;
ଆଜ ରଣେ ନ ହେଲେ ବିନାଶ
ସ୍ୱର୍ଗ ମର୍ତ୍ତ୍ୟ ରସାତଳ କରିବ ସେ ଧ୍ୱଂସ ।

ରାମ—ନ ବଳାଅ ମୋତେ ଆଉ ଭାଇ, ତେଜିଲୁ ମୁଁ ଧନୁର୍ବାଣ

କରୁ ରାବଣ ହୃଦୟେ ଭକ୍ତିବନ୍ଦ ନ ଉଠିଲେ
ମୋ ହୃଦଜୁମୁଦ କାହୁଁ ଫୁଟନ୍ତା ସହଜେ
ତମ ଅନ୍ଧକାର କେତେ ହୋଇଥାନ୍ତା ଦୂର ;

ରାବଣ—କି ଆଶ୍ଚର୍ଯ୍ୟ ? ଶ୍ରୀହସ୍ତୁ ଧନୁ କରୁ ତେଜିଲେ ମୋ ପ୍ରଭୁ

ଅନ୍ତର୍ଯ୍ୟାମୀ ଜାଣିଲେ ମୋ ଅନ୍ତର ବେଦନା
ସେ ଜନମକ୍ତେ ହୋଇଗଲେ ତୁଷ୍ଟ
କଣ୍ଟୁବାଣୀ ନ କହିବ ଯେବେ
ପ୍ରଭୁ ମୋତେ ନ ମାରିବେ କେବେ
କେତେକାଳ ବହିବ ରାକ୍ଷସ କଳେବର ( କୋପେ ଉଠି )
ରେ ବନୁଆ ଜଟାଧାରି
ସ୍ତ୍ରୀ ର ହେଲୁ ରକ୍ଷାକାରୀ କାହିଁକି ?

( ଶ୍ରୀ ନନ୍ଦନନ୍ଦନ ଜଗତବନ୍ଦନ—ବୃତ୍ତେ । )

କପି ହୋଇ ଭୀତ; ଆତୁରରେ କମ୍ପିତ; ପକାଇଲୁ ଧନୁ କରୁ ।
ବିଗ୍ରହରୁ ପାଜି; ପଳାଇବୁ ଆଜି, ସତେ ମୋହର ଆଗରୁ ।
ପଦ । ଏତେ ଜଳଜଳା ଅନ୍ଧ ଆରେ କେଳା ଜାତି ଗୁଣ ନ
ପାଶୋରୁ । କଳାପୋଡ଼ା ଭାଲୁ ମାଙ୍କଡ଼ଙ୍କୁ ଘେନି ନେବୁ ସୀତା
ଏ ଠାବରୁ । ୧ । ମେଳା ୨ ହୋଇ ଫଳ ମୂଳ ଖୋଜି, ଖାଆନ୍ତି
ଯେହୁ ବନରୁ । ସେ କାହୁଁ ଜାଣିବେ ରଣ କଉଶଳ ଘର
ଯାହାଙ୍କର ତରୁ ।୨। ଠେଙ୍ଗା ଦେଖାଇଲେ ପଳାନ୍ତି ସେ ଡରେ;
ତୁ ପୁଣି ତାହାଙ୍କ ଗୁରୁ । ବଇଷ୍ଣବ ବୋଲେ ଇଷ୍ଟ ଚିନ୍ତୁଥିଲି
ମନରେ କାସ ବିଗ୍ରହରୁ ।୩। →:o:←

ଲକ୍ଷ୍ମଣ—ହେ ଅଗ୍ରଜ ! ଶୁଣୁଅଛ ଭକତ ବଚନ ।

(ରଥ ରଖ ପଥେ ଦେଖୁ ବଙ୍କାବଂଶୀପାଣିନ-ବୃତ୍ତେ ।)

ରଘୁମଣି ଭକ୍ତ ବାଣୀ ଶୁଣ ଶ୍ରୁତି ଡେର ହେ । ପ୍ରଭୁ ୨ ବୋଲି
କେତେ ଗୁହାରୁଅଛି ହରି ହେ । ପଦ । ଭକତ ସୁମନ ଫୁଟି, ବାସ
ପଡ଼ୁଅଛି ଚହଟି, ହୃଦରୁ ଉଇଁବ ଦୟା ଅରୁଣ ତୁମ୍ଭର ହେ ।୧।
ସୁଧାସମ ବାକ୍ୟ ଯେତେ, ବନରୁ କହୁଛି ତୋତେ, କ୍ଷୁଧା-
ତୁରଙ୍କୁ ଭୋଜନ ପରଶିଲା ପରି ହେ ॥ ଧର କୋଦଣ୍ଡି କୋଦଣ୍ଡ,
କାଟ ଦୁଷ୍ଟ ଦୈତ୍ୟ ମୁଣ୍ଡ । ଦଣ୍ଡ ଦଣ୍ଡ ହୋଇ ଦିନ ଯାଉଅଛି
ସରି ହେ ॥ ଭକ୍ତ ଯେବେ ହୋଇଥାନ୍ତି; ହରି କି ଆଣନ୍ତି
ସୀତା । ବଇଷ୍ଣବ କଷ୍ଟ କପି ନ ଯାଉଛି ଫେର ହେ ॥

→:o:←

ରାମ—ଆରେ ଆରେ ଲଙ୍କା ନାଗରେର,
ଆସ ଶୀଘ୍ର କରରେ ସମର
ତେତେଣ ଜନ୍ତୁପତି ପଥ ଗୃହିଛନ୍ତି
ଯିବାକୁ ରେ ହୁଅ ଅଗ୍ରସର ।

ରାବଣ—ଧର ଧନୁ ଶକ୍ତି ଦେଖା ରଣେ ।
ରାମ —ବେଳାଜଣ ମଧ୍ୟରୁ ମରବୁଁ କେହ ଜତଣ । (ଯୁଦ୍ଧ)
ଧନ୍ୟ ଧନ୍ୟ ତୋର ବାଣ ଶିକ୍ଷା ।
ରକ୍ତେ ଜର୍ଜ୍ଜରିତ କଳେବର ପ୍ରାଣ ଯିବାଯାଏ ଅଛୁ ପଣ
ଏବେ ଗାର ଧର ଧନୁର୍ବାଣ (ଯୁଦ୍ଧ)
କି କରିବ କହ ହେ ମାତଳି ।
( କି କହିବ ସୂଚନା ମୋ—ବୃତ୍ତେ )

କି ଉପାୟ କରିବ ମାତଳି ମୋତେ କହ ହେ । ଶରଘାତେ ଜରଜର ହେଉଛି ମୋ ଦେହ । ମାତଳି । ୧ । ଗଳି୨ ହୋଇ ରକ୍ତ ଅଙ୍ଗୁ ଗଳି ପଡ଼େ । ଯେତେକ କାଟେ ରାବଣର ମୁଣ୍ଡତ ନ ଛୁଡ଼େ । ମାତଳି । ୨ । ଇଚ୍ଛାହୁଏ ରଣରୁ କରନ୍ତି ପଳାୟନ । ନୁହଇ ମାତଳି ଏହା କ୍ଷତ୍ରିୟବିଧାନ । ମାତଳି । ୩ । ଜାଣିଥିଲେ ଉପାୟ ବତାଇ ଦିଅ ମୋତେ । ବଇଷ୍ଣବ ଭାବେ ରାମପଦ ଧ୍ୟାଇ ଶତ୍ରେ । ଶ୍ରୀରାମ । ୪ ।

ମାତଳି—କିପାଁ ଚିନ୍ତାକର ଚିନ୍ତାମଣି ।
( ଶ୍ୟାମରେ ନୁହ ବିମନା ଚନ୍ଦ୍ରବଦନା—ବୃତ୍ତେ ।)
ଭବଭ୍ରାନ୍ତି କାହିଁପାଇଁ ଭାବନା କର ।
ଭୁଲିଛ ଉପାୟ ଆହେ କୋଦଣ୍ଡଧର । ପଦ ।

ଲୋମକୂପେ ଗାଳି୨ ବ୍ରହ୍ମାଣ୍ଡ ଅଛଇ ଯାର । ତାହାଙ୍କୁ ଜିଣିବ କାହୁଁ ରାକ୍ଷସ ଛାର ।୧। ରାବଣର ମୃତ୍ୟୁବାଣ; ରଖେଭୁଲିଛ ଆପଣ, ଯାହା ଆଣି ଦେଇଥିଲ ବି ନୁକୁମର ।୨। ସେ ଶର ବସାଇ ଗୁଣେ; ଯେଣ ପ୍ରଭୁ ଏହିକ୍ଷଣେ । ହୃଦୟ ଫୁଟନ୍ତେ ନାଶହେବ ଅସୁର ।୩। ବରଦେଲେ ପିତାମହ, ବକ୍ଷରେ ତାର କ୍ଷୟ । ବଇଷ୍ଣବ ବୋଲେ ବେଳ ହେଲା ଉଛୁର । ୪ ।

ରାମ—( ଧନୁରେ ବାଣ ଯୋଡ଼ି )
　　ରେ ରେ ବ୍ରହ୍ମରାକ୍ଷସ, ଚିହ୍ନ ଏହା ଅଟେ କେଉଁବାଣ ?
ରାବଣ—କି ଆଶ୍ଚର୍ଯ୍ୟ ! ମୃତ୍ୟୁଶର ପାଇଲା ଏ କାହୁଁ ।
　　ମନ୍ଦୋଦରୀ ! ହେଲୁ ଶତ୍ରୁ ତୁହି ଏତେବେଳେ ?
　　ହା ମାତ କୈକଷେ !
　　ଅଧମ ସନ୍ତାନ ବିଦାୟ ନେଉଛି ତୋ ଠାରୁ
　　ଦଶମାସ ଦଶଦିନ ଗର୍ଭେ ଧରି ମୋତେ
　　ସହିଅଛୁ ବହୁକଷ୍ଟ ମାତ
　　ଜାତ କରି ବଢାଇଲୁ ଦେଇ ଶକ୍ତି ଯେତେ
　　ଆଜି ସେହି ଶକ୍ତି ମାତ ହେଉଛି ହରଣ
　　ନ ପାରିଲି ସୁଝି ଋଣ ତୋର
　　ହା ପିତଃ ! ବିଶ୍ରବାଋଷେ
　　ଇହଧାମୁଁ କୁମର ତୁମ୍ଭର ବିଦାୟ ହେଉଛି ଚିରଦିନ
　　ନାହିଁ ପୁତ୍ର ନାତି କେ କାନ୍ଦିବ
　　କାନ୍ଦିବୁ ତୁ ଏକା ମନ୍ଦୋଦରୀ
　　ଚିର ଆଶା ବୃକ୍ଷମୂଳେ ତୋର.
　　କଲା ରାମ କୁଠାର ଆଘାତ
　　ରେ ରାଘବ; ମନସାଧ ପୂର୍ଣ୍ଣ ହେଲା ତୋର ।
ରାମ—ସମ୍ଭାଳ ସମ୍ଭାଳ ଶର ସମ୍ଭାଳ ସମ୍ଭାଳ ।
　　　[ ଯୁଦ୍ଧେ ଶର ପତନ; ଓ ରାଜାପତନ ]
ସେନା—ଜୟ ରାମଚନ୍ଦ୍ରଙ୍କର ଜୟ ।
ରାବଣ—[ ପଦ୍ଧ ] ହା ରଘୁନାଥ ! ତୁମ୍ଭେ କୁଆଡେ଼ ଗଲ ?
ଆସ ମୋ ହୃଦୟ ମଧ୍ୟରେ ଠିଆ ହୁଅ, ହୃଦୟଆସନ କି ମୋର
　　କଣ୍ଟକ ପରି ଜଣା ଯାଉଛି; ଆସିବ ନାହିଁ । ଆସିବ ନାହିଁ ।
　　ରାମ ହେ ରାମ ହେ ରାମ ହେ ।

ରାମ—ଓଃ ! ମନ ମୋର ନ ରହୁଛି ଏଥି;
ଭକ୍ତ ମୋର ଡାକୁଛନ୍ତି ଆରତେ
ଲକ୍ଷ୍ମଣଙ୍କୁ ଭୁଲାଇ କଥାରେ, ଯିବି ମୁହିଁ ରାବଣ ନିକଟେ
[ ପ୍ରକାଶ୍ୟେ ] ଲକ୍ଷ୍ମଣରେ ଏକ କଥା ଶୁଣ ଭାଇ ମୋର

[ ରତ୍ନାକର ତପୋଧନ—ବୃତ୍ତେ । ]

ଚାଲରେ ଲକ୍ଷ୍ମଣ ଚାଲ, ଯିବା ରାବଣର ପାଶ । ରାଜନୀତି ଶିଖିବାକୁ ଭାଇ ବଳୁଛି ମୋ ଆଶ । ସଦା ବାଳକକାଳୁଁ କାନନେ ବୁଲୁଅଛୁଁ ଆମ୍ଭେମାନେ, ବନ୍ଧୁଜନ ଆସନ୍ତେ ପିତା ଗଲେ ସ୍ୱର୍ଗବାସ ।୧। ବନ ବାନରଙ୍କ ସଙ୍ଗେ, ଦିନ କଟାଇଲୁଁ ଆମ୍ଭେ । ନ ଜାଣିଲେ ରାଜନୀତି କେମନ୍ତେ ପାଳିବା ଦେଶ ।୨। ତ୍ରିପୁରେ ଦୈତ୍ୟକେଶରୀ, ହୋଇଥିଲା ଛତ୍ରଧାରୀ । ସର୍ବଗୁଣେ ଗୁଣୀ ରାଜା ଜାଣନ୍ତି ଭୂତ ଭବିଷ୍ୟ ।୩। ତାଠାରୁ ସକଳ ନୀତି, ଶିଖିବାରେ ସମ୍ପ୍ରତି, ବିଳମ୍ବ ନ ସହେ ଆଉ ବିପ୍ରବଇଷ୍ଣବ ଭାଷ ।୪।

ଲକ୍ଷ୍ମଣ—ଚାଲ ଭାଇ ଶୀଘ୍ର ରାଜା ପାଶେ; ବାଣଘାତେ କପି
ପାଏ ରାଜା । ସେବିକିଷଣ ନ ରହିବ ପ୍ରାଣେ ।

( ରାବଣଠାକୁ ରାମଙ୍କ ଗମନ । )

ରାମ—ଲଙ୍କାପତି ! ଆସିଅଛୁ ତୋର ଶତ୍ରୁ ତବ, ଧେଜାବାକୁ
ଉପଦେଶ କିଛି ।

( ଚଢ଼ାଇ ଦେଉଛନ୍ତି ପିତା, ବୃତ୍ତେ )

ଶିଖାଅ ରାଜନୀତି ଆଜ ହେ ଲଙ୍କାପତି ତେଜିଣ ରୋଷ । ସଦା ସାନନ୍ଦନ୍ତି ବନରେ ବାନରଙ୍କ ସଙ୍ଗରେ ସହୁଣ ଅଶେଷ କ୍ଳେଶ ରହିଲୁ କରିଣ ବାସ ।୧। ତୁମ୍ଭଙ୍କୁ ଗୁରୁପଣେ ବରିଣ ଶ୍ରୀଚରଣେ ଆଜଠାରୁ ହେବାଲାଗି ହୋଇଲୁଁ ତୁମ୍ଭର ଶିଷ୍ୟ ।୨। ଅଟୁଁ ଯେ ପିତୃହୀନ ହେ ଧୀର ଦଶାନନ ବିଳମ୍ବ ନ ସହେ ଆଉ ବିପ୍ର ବଇଷ୍ଣବ ଭାଷ ।୩। ✱

ରାବଣ— ରାବଣରେ ! ଧନ୍ୟ ହେଲା ଜୀବନ ତୋ ଆଜ ।
ଯାହାଲୁହ ଭାବଥିଲୁ ମନେ, ମନଗୁଣେ ଫଳିଲା ତୋ ଫଳ
ଅନ୍ତିମ କାଳରେ ଆସି ଅନ୍ତର୍ଯ୍ୟାମୀନାଥ
ରାଜୁପଦେ କରିଲେ ବରଣ,
ତେବେ ଅନ୍ତଃକାଳେ ରାଟକରି ପଢାଇବ ପଠ
ରଘୁମଣି ରାଜନୀତ ଶିଖିବାକୁ
ଯେବେ ଥାଏ ବାଞ୍ଛା, ମନସ୍ଥିରେ ଶୁଣ ମୁଁ କହୁତ ।
( ହେ ତପୋଧନ କେଣେ କରିବ, ବୁଝେ )

ହେ ରଘୁପତ, ଶୁଣ ଶୁଣ ରାଜନୀତ ! ବେଶିକରି ମୁହଁ ନ ପାରିବ କହି ଶରବିଦ୍ଧ ଯେଣୁ ଛାତ ।ପଦ। ହେ ପୁରୁଷୋତ୍ତମ ଯେ କାର୍ଯ୍ୟ ଉତ୍ତମ ତାହା ସାରିବ ଝଟତ । ଅସତ କର୍ମକୁ ରଖିବ ପଛକୁ ତହିଁରେ ନ ଯିବ ମାତ । ୧ । ଶୁଣ ନାରାୟଣ ତହିଁର କାରଣ, ସହଜେ ମୁଁ ଦୃଷ୍ଟ ଜାତ । ଖାରସାଗରକୁ ଖୀର କରି ଯାର ସ୍ୱର୍ଗେ ଶିଢୀ ବାନ୍ଧିଥାନ୍ତି । ୨ । ନରକରେ ନେଇ ଜୀବଙ୍କୁ ପକାଇ; ଦଣ୍ଡିଦଏ ଜନ୍ତୁପତ । ଉଠାଇବ ତାହା ଆଜ କାଲିବୋଲି ଭାବୁଥାଏ ନିତ ପ୍ରତ ।୩। ଦେଖି ସୀତା ବଦନ ସୂର୍ପଣଖା ବଚନେ, ଆସି କହିଲା ମୋ କତ । କାଲି ସୀତା ଗେହ୍ଲି ହେଲି ଏତେ ସବୁ ଘଟିଲା ଆସି ବପତ୍ତି । ୪ । ସତ୍‌କର୍ମ ଛାଡ଼ିଲି, ଅସତେ ଜଡ଼ିଲି ହେଲା ଏମନ୍ତ ଦୁର୍ଗତ । ହେଉଛି ମେଲାଣି ବଇଷ୍ଣବ ଭଣି; ନାଥ ଜନକଦୁହିତା । ୫ । ——(✱)——

ରାବଣ—ଆହା ! କାଢିନିଅ ରଘୁନାଥ ଶର
ହ୍ରାସ ହେବ କଷ୍ଟ ପିଣ୍ଡୁ ପ୍ରାଣ ଯାଉ ମୋର ( ଶର କାଢିବା )
ହା-ରାମ —ହା-ରାମ—ହା-ରାମ—ହା-ରାମ— ( ମୃତ୍ୟୁ. )

ବଭୀ—ହା ଭାଇ ! ତୁ ମୋତେ ଛାଡ଼ି କୁଆଡେ଼ ଗଲୁ
ଯେତେ ବୁଝାଇଲି ସୀତା ଦିଅ ତୁ ଫେରାଇ
ହିତ କଥା ମଣିଲୁ ଅହିତ ।

[ ଚକ୍ର କି ନାହିଁ କର—ବୃତେଉ ]

ଆହା ଭଇରେ ତୁ ମୋତେ ଗଲୁ ଛାଡ଼ି । ପଦ । ମାନିଥିଲେ ମୋ କଥା, ଏହାକି ହୋଇଥାନ୍ତା, ରାଜ୍ୟରୁ ଦେଲୁ କାଢି ।୧। ତୋ ରାଣୀଗଣ ଯେତେ, ତେଜିଗଲୁ କେମନ୍ତେ, ସ୍ୱର୍ଣ୍ଣଜଗତ ବାଡ଼ି । ୨ । ଲଙ୍କାପୁର ବିଭବ, ଭୋଗ କିଏ କରିବ, ପାଇଥିଲୁ ତା ଲାଗି । ୩ । ଜାଣିଥିଲେ ଭାଇ ବୋଲି, ଭୟେ ତାକି ନ ଥିଲି, ବଇ ଏ ପଦ ଯୋଡ଼ି । ୪ ।

ରାମ—ପ୍ରିୟସଖା ! କାନ୍ଦିଲେ କି ହେବ ଆଉ ।

ଯାହାସବୁ ବିଧାତାବିଧାନ, କେ ତାହା କରିବ ଛେଦନ
ଯଉଦା ସରିଲେ ହାଟେ ରହଇ କି କେହି
ତଇଳ ଭାଣ୍ଡରେ ଘେନ ରଖିବା ରାବଣେ
ଅଭିଷେକ ପରେ ନେଇ କରିବା ସଂସ୍କାର ।

ବିଭୀ—ଯେ ଆଜ୍ଞା ( ରାବଣଙ୍କୁ ଘେନି ସମସ୍ତଙ୍କ ପ୍ରସ୍ଥାନ )

( ମାଡବା ଆନନ୍ଦେ ଆଜ୍ଞ, ବୃତେଉ )

ଅ,କୁ— କେତେ ମନୋହର ଦେଖ ସଂସାରର ରୀତି ନୀତି । ଭଲେ ଭଲ ଘଟେ ମନ୍ଦେ ମନ୍ଦ ହୁଅଇ ପ୍ରାପତି । ପଦ । କଲେ ଅବହିତ କର୍ମ, ଛାଡ଼ିଣ ପଳାଏ ଧର୍ମ, ଆୟୁଷ ହୁଅଇ କ୍ଷୟ ନିନ୍ଦା ଘୋଷଇ ଧରିତ୍ରୀ । ୧ । ଏ ଆନନ୍ଦ ଲାଗେ ଲଙ୍କା, ନାହିଁ କାହା ମନେ ଶଙ୍କା, ଧର୍ମଭୀରୁ ବିଭୀଷଣ ହୋଇବେ ଏଥର ନୃପତି । ୨ । ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ, ରମ୍ଭାବୃକ୍ଷ ସେହିଠାବ, ବାଜେ ଶଙ୍ଖ ଭେରୀ ତୂରୀ ବ୍ରାହ୍ମଣ ବେଦ ପଢନ୍ତି । ୩ । ଯେ କରିବ ନାରୀ-ଚୋରୀ, ସେ ହେବ ରାବଣ ପରି, ବଇଷ୍ଣବ ବୋଲେ ଆଜ୍ଞା ଆଉ କେବ ଜନ୍ମପତି । ୪ ।

ସମାପ୍ତ ।

Ptd. by Nityananda Sahoo A. Press Cuttack

# ବିଜ୍ଞାପନ ।



କବି ଶ୍ରୀ ବୈଷ୍ଣବପାଣିଙ୍କ 

ରଚିତ ।

ଅତି ଉତ୍କୃଷ୍ଟ ପୁସ୍ତକ— ଅତି ଉତ୍କୃଷ୍ଟ ପୁସ୍ତକ ।

| | | |
|---|---|---|
| ରଙ୍ଗସଭା ସୁଆଙ୍ଗ | ଖ ୧ | ଟ ୦ ୵ |
| ପ୍ରହ୍ଲାଦ ଚରିତ ସୁଆଙ୍ଗ | ଖ ୧ | ଟ ୦ ୵ |
| ଧ୍ରୁବଚରିତ ସୁଆଙ୍ଗ | ଖ ୧ | ଟ ୦ ୵ |
| ବ୍ରଜଲୀଳା ସୁଆଙ୍ଗ | ଖ ୧ | ଟ ୦ /୬ |
| କୀଚକବଧ ସୁଆଙ୍ଗ | ଖ ୧ | ଟ ୦ /୬ |

ଏହାଛଡ଼ା ନାନାପ୍ରକାର ସୁଆଙ୍ଗ, ପାର୍ଟି ଇତ୍ୟାଦି ମିଳେ ।

ଶ୍ରୀ ଗୋବିନ୍ଦସାହୁ ।

ବାଲୁବଜାର—ବିନୋଦବିହାରୀ

ତଥାଃ ଅଃ ଷ୍ଟୁଡେଣ୍ଟଷ୍ଟୋର୍ କଟକ ।